


ରାଧାମୋହନ ଗଡ଼ନାୟକ

ପ୍ରକାଶକ
ଦାସ ବ୍ରଦର୍ସ
ବ୍ରହ୍ମପୁର : କଟକ : ସମ୍ବଲପୁର :

ମୁଦ୍ରାକର
ପଣ୍ଡିତ ଭୁବନେଶ୍ୱର ମିଶ୍ର
ପ୍ରଭାତୀ ପ୍ରେସ୍
କଟକ

ଶିଳ୍ପୀ
ଶ୍ରୀ ଗୋପାଳ କାନୁନଗୋ

ପ୍ରଥମ ମୁଦ୍ରଣ
୧୯୫୯
୧୦୦୦ ଖଣ୍ଡ

ମୂଲ୍ୟ
ତିନିଟଙ୍କା ମାତ୍ର

## ପଦେ ଅଧେ……

୧୯୫୭ ମସିହାର ସେପ୍ଟେମ୍ବର ମାସ—ଘଟନାଚକ୍ରରେ ମୋର ମାନସିକ ଅବସ୍ଥା ଭଲ ନ ଥାଏ । ଜୀବନ ପଥରେ ଏକ ତିକ୍ତ ଅନୁଭୂତି—ମଣିଷ, କ'ଣ ମୁଁ ଭାବି ପାରୁ ନ ଥାଏ, ସମ୍ପୂର୍ଣ୍ଣରୂପେ ଅବଧାରଣାର ଅଜ୍ଞାତ । ସେତିକିବେଳେ ମୋର ବିକ୍ଷୁବ୍ଧ ମନରେ "ପଶୁପକ୍ଷୀର କାବ୍ୟ" ରୂପ-ପରିଗ୍ରହ କରିଚି । ସେଇ ଗୋଟିଏ ମାସରେ ଇଆର ସୃଷ୍ଟି ।

ଦଶହରା,
୧୯୫୯

ରାଧାମୋହନ ଗଡ଼ନାୟକ
ଅନଗୁଳ

# ପ୍ରକାଶକଙ୍କ ଆତ୍ମକଥା

କବି ଗଡ଼ନାୟକଙ୍କ ପ୍ରତିଭା ଓ ପ୍ରଣୟନର ଭୂମିକା ଦେବା ଅନାବଶ୍ୟକ । ବହୁଦିନରୁ ତାଙ୍କଠାରୁ ଖଣ୍ଡିଏ ପାଣ୍ଡୁଲିପି ପାଇବାକୁ ମୁଁ ଅନୁରୋଧ କରିଥିଲି । ସୌଭାଗ୍ୟବଶତଃ ତାଙ୍କଠାରୁ ଏହି 'ପଶୁପକ୍ଷୀର କାବ୍ୟ'ଟି ମିଳିଲା । ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ପ୍ରତିଷ୍ଠିତ 'ପ୍ରଭାତୀ ପ୍ରେସ' ସହାୟତାରେ ଆଜି ତାହା ପ୍ରକାଶ ପାଇଲା ।

କାବ୍ୟଟି ଉତ୍କଳ କାବ୍ୟଜଗତରେ ନୂତନ ଧରଣର । ଆଦିମକାଳରୁ ଆଜିପର୍ଯ୍ୟନ୍ତ ପୃଥିବୀର ସବଳ ପଶୁପକ୍ଷୀଙ୍କ ଜୀବନରେ ଯେଉଁ ବୈଶିଷ୍ଟ୍ୟ ସୃଷ୍ଟି ହୋଇଛି, ସେଥିରୁ କିଞ୍ଚିତ୍ ନେଇ କବି ଗୋଟିଏ କବିତାଗୁଚ୍ଛ ରଚନା କରିଛନ୍ତି ଓ ତାହାର ନାମ ଦେଇଛନ୍ତି **'ପଶୁପକ୍ଷୀର କାବ୍ୟ'** । ଆଦିକବି ବାଲ୍ମୀକିଙ୍କ ମୁଖନିଃସୃତ ପ୍ରଥମ-ଶ୍ଳୋକ-ବର୍ଣ୍ଣିତ ନିଷାଦଶର ବିଦ୍ଧ 'କ୍ରୌଞ୍ଚମିଥୁନ'ର କାହାଣୀଠାରୁ ମହାଶୂନ୍ୟକୁ ରକେଟ୍ ଯାତ୍ରୀ 'ଲାଇକା ଶ୍ୱାନ'ର ବିବରଣ ପର୍ଯ୍ୟନ୍ତ ବିଂଶାଧିକ ପଶୁପକ୍ଷୀ—ଯଥା ଜଟାୟୁ, ଶକୁନ୍ତର ଦାନ, ଗୋଲାପ ଓ ବୁଲ୍‌ବୁଲ୍, ମରୁର ଉଟେଲ୍, ବଉଳା ଓ ମହାବଳ, କାଉପରଙ୍କ କୁକୁର ବୋ, ଆଣ୍ଡ୍ରୋକ୍ଲସ ଓ ସିଂହ, ହଂସଦୂତ, ଚୈତକ ଅଶ୍ୱ ପ୍ରଭୃତିଙ୍କ ବିଷୟରେ ନାନା ରସବିଜଡ଼ିତ ମନୋମୁଗ୍ଧକାରୀ କବିତା ସୃଷ୍ଟି କରି ଗଡ଼ନାୟକ ମହାଶୟ ଉତ୍କଳ-ସାହିତ୍ୟ ଜଗତକୁ ଗୋଟିଏ ଅଭିନବ ଦାନ ଦେଇପାରିଛନ୍ତି ।

ଏହି କାବ୍ୟଟି ପ୍ରକାଶ କରି ମୋ'ର ଦେଶର ପାଠକ ପାଠିକା-ମାନଙ୍କ ଆଗରେ ମୁଁ ଆତ୍ମପ୍ରସାଦ ଅନୁଭବ କରୁଅଛି ।

ଦଶହରା,
୧୯୫୯

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ
ଦାସ ବ୍ରଦର୍ସ

# ସୂଚୀ




୧

ଶିଳା-ଶଯ୍ୟାର ସଫେନ ସଲିଳ ଝଲକେ
ବନାନୀର ସ୍ୱପ୍ନ ଉଜ୍ଜ୍ୱଳ କରି ପଲକେ
ତନ୍ୱୀ ତମସା ବହଇ,
କଲ କଲ-ଗୀତ-ବନ୍ଧେ
ପ୍ରୀତି-ଗଦଗଦ-ଛନ୍ଦେ
ରସ-ଉଚ୍ଛଳ ପ୍ରାଣର କାହାଣୀ କହଇ ।

୨

ଚଞ୍ଚଳ ଗୁଞ୍ଜର ରାଗିଣୀ ଶୁଣାଇ ସୁତାନେ
ମତ୍ତ ମଧୁପ ପୁଷ୍ପ ବୁକୁର ବତାନେ,
କେଳି ବିରଚଇ ହରଷେ,
ମଧୁ-ମନ୍ଥନ-ଗନ୍ଧ
ମରୁତ ମନ୍ଦ ମନ୍ଦ
ଉଦ୍‌ବେଳ ବୁକେ ଢଣି ଢଣି ବୁଲି ପରଷେ ।

୩

ପ୍ରିୟାର ପୁରତେ ମେଳି ଚିହ୍ନିତ କଳାପ
ନାଚି ନାଚି କେକା ତୋଳଇ ଷଡ଼ଜ ଆଳାପ
ଶଷ୍ପ-ସବୁଜ ଅୟନେ,
ହରଣ ହରଣୀ-ଅଙ୍ଗେ
ବିଷାଣ ବିଲେଖି ରଙ୍ଗେ
ମଉନେ ରହଇ ଦର ନିମୀଳିତ ନୟନେ ।

୪

ତମାଳ ଶାଖାର ନବଘନ ପର୍ଣ୍ଣ-ତଳପେ
କ୍ରୌଞ୍ଚମିଥୁନ ପ୍ରଣୟ-ଚଞ୍ଚଳ ଗଳପେ
ରଚଇ ଚିର-ସପନ,
କ୍ଷଣଟିଏ ରହି ସ୍ତବ୍ଧ
ନ କର ଟିକିଏ ଶବ୍ଦ
ନିରେଖି ଦେଖଇ ଏକ ଆରେକର ଲପନ ।

୫

ଚଞ୍ଚୁପୁଟରେ ଚଞ୍ଚୁଟି ଭରି ଆଦରେ
ଏକ ଆରେକର ସୀଧୁପାନ-ଉନ୍ମାଦରେ
ଭୁଞ୍ଜଇ ନବ ପୁଲକ,
କେତେଥର-କାତର ବକ୍ଷେ
ଏକ ଆରେକର ପକ୍ଷେ
ମୁଖଟି ଗୁଞ୍ଜି ଯାଚେ ତନ୍ମୟ ପଲକ ।

୬

କିଏ ସେ ଦାରୁଣ ? କାହାର ଦୃଷ୍ଟି ଅରୁଣ
ଦେଖିଲା ତହିଁ ସେ ଜୀବନ ତରଳ ତରୁଣ
କେଳିକୌତୁକ-ପୂରିତ ?
ବିଶ୍ବର ନ ପାରି ଚିତ୍ତେ
ପ୍ରେମର ଅମର ଅର୍ଥେ
ନିଷ୍ଠୁର ଏକ ବାଣ ମାରିଦେଲା ତ୍ବରିତ ।

୭

ଆହତ କ୍ରୌଞ୍ଚ ତଳେ ଲୋଟି ଗଲା ଅବଶେ,
ବୁକୁର ରୁଧିର ଝରଇ ଅଧୀର ରଭସେ
ମରଣେ ଉଠିଲା ଶିହରି,
ଦୟିତା ସଙ୍ଗେ ସଙ୍ଗେ
ଲୋଟିପଡ଼ି ପ୍ରିୟ ଅଙ୍ଗେ
ବକ୍ଷ ଫଟାଇ ତୋଳିଲା କାତର ଲହରୀ ।

୮

ନିଷାଦର ବାଣ ପଶିଏ ଶାଣିତ କୂଜନ
ଚକିତ ଚମକ କରିଦେଲା ତହିଁ ସୃଜନ,
ଆକୁଳେ ଗୃହିଁଲା ତମସା,
କୁସୁମର ବୁକେ ମୁଗ୍ଧ
ମଧୁଲିଟ ହେଲା ସ୍ତବ୍ଧ;
ପ୍ରିୟ ଭୁଲେ ରହି ଶିଖମା, ଧରଣୀ ବିବଶା ।

୯

ସହସା ଆସିଲେ କିଏ ସେ ଶାନ୍ତ ମୂରତି ?
ଲଲାଟେ ଦୀପ୍ତି, ନୟନେ ବିଶ୍ୱ-ପୀରତି,
ଦେଖିଲେ ତହିଁ ସେ ଭୂତଳେ,
ଆଶ୍ରମ ବନ-ବକ୍ଷେ
ସଦ୍ୟ ମରଣ-ଅଙ୍କେ
ନିସ୍ପହ ବୁକୁର କାତର ଶୋଣିତ ଉଥଳେ ।

୧୦

ଆଖିର ପଲକେ ବାଲ୍ମୀକି ମୁନି ମହତ
ମରମେ ମରମେ ହୋଇଲେ ଦୀପ୍ତି ଆହତ,
ଗୃହିଁଲେ ବ୍ୟାଧର ଶରୀରେ,
ବ୍ୟଥାର ଗଭୀର ସ୍ପନ୍ଦେ
ନବ ଅଭିନବ ଛନ୍ଦେ,
ଶ୍ଲୋକର ତଡ଼ିତ ଜାଳି ଦେଲେ ଶୋକ-ସଲିଳେ ।

୧୧

"ଆରେ ନିର୍ଦ୍ଦୟ ନିଷାଦ କି ଦୋଷ ସାଧିଲୁ ?
ଗୋଟିଏ ନୁହଇ ଦୁଇଟି ଜୀବନ ବଧିଲୁ ।
ଅଭିଶାପ ନେ' ଜୀବନେ,
ନିର୍ମମ ଆରେ ଘୃଣ୍ୟ
ମୈତ୍ରୀ-କରୁଣା-ଶୂନ୍ୟ,
ନିର୍ଯଶ ଭୁଞ୍ଜ ନିଖିଳ ବିଶ୍ୱ ଭୁବନେ ।"

---



ଅଶ୍ରୁ-ସଜଳ ରାମ ଲକ୍ଷ୍ମଣ
ଦେଖିଲେ ସହସା ନୟନ ଆଗେ,
ଆହତ କାତର ଗୃଧ୍ର ପଡ଼ିଚି
କାନନ ଭାଗେ ।

ଚଉପାଶେ ଘେରି କାକ, ଶୁକ, କେକୀ
କପୋତ, ବଳାକା, ଗୃଧ୍ର ଶତ
କଲ ରୋଳ ମେଳି କାତର କଣ୍ଠେ
ବିଳାପ-ରତ ।

ଶୋକ ଜର୍ଜର ରାମ ଲକ୍ଷ୍ମଣ
ଉଦ୍‌ବେଗଭରେ ପାଶକୁ ଯାଇ
'କି ହେଲା' 'କି ହେଲା' ଆକୁଳ ହୋଇଲେ
ଜାଣିବା ପାଇଁ ।

ଅଶ୍ରୁ-କାତର କଣ୍ଠେ କହିଲା
ଛିନ୍ନ-ପକ୍ଷ ଗୃଧ୍ରରାଜ,
"ତୁମେ କି ରାଘବ, ତୁମେ କି ରାଘବ,
ଆସିଲ ଆଜ ?

ଆଉ ଏ ଜୀବନେ ଥିଲା ନାହିଁ ଆଶା
ପାଇବି ବୋଲି ତ ତୁମର ଦେଖା,
ତୁମେ ଆସି ଏବେ ପୂର୍ଣ୍ଣ କଲ ମୋ
ଜୀବନ-ରେଖା ।"

"ହତଭାଗ୍ୟ ମୁଁ ରାମ, ଏଇ ମୋର
ଭାଇ ଲକ୍ଷ୍ମଣ, ପକ୍ଷୀରାଜ,
କିଏ ଦୁର୍ମତି ତୁମକୁ ଦେଇଛି
ଏ ଦଶା ଆଜ ?

କହ ଏବେ କିଏ ସେଇ ଦୁର୍ମତି ?
ସଜାଗ ମୋର ଏ ଧନୁବାଣ,
ତୁମର ପାଇଁ ମୁଁ କ୍ଷଣକେ ଜାଳିବି
ତାହାର ପ୍ରାଣ ।"

"ଦଶା ବୁଝେ ଏ ତ ଧର୍ମ ମୋହର
ଆପେ ଆପେ ମୁହିଁ ନେଇଚି ବର,
ସେଥିପାଇଁ କପାଁ ଜଳ ଉଠୁଅଛ
ଅନଳ ପର ?

ତୁମେ ଆଗ କୁହ ତୁମର ବାରତା
ପ୍ରିୟାର ବାରତା ପାଇଲଣି ତ ?"
ଖର ନିଃଶ୍ୱାସେ ବହଗର ବୁକୁ
ଉଚ୍ଛ୍ୱସିତ ।

ଅଶ୍ରୁ-ଆବେଗେ କହିଲେ ରାଘବ
"ବୁଲିଲିଣି ସାରା କାନନ-ଭୂଇଁ ।
ପରାଣ-ପ୍ରିୟାର ସଂଧାନ କାହିଁ
ପାଇନି ମୁହିଁ ।

ନଦୀ ତରୁ ଲତା, ହରିଣ, ମୟୂରେ
ପଚାରିଚି ମୁହିଁ ସକଳ ପଥେ,
ପ୍ରିୟାର ବାରତା ଦେଇ ପାରିଲେନି
କେହି ତ ମତେ ।

ତୁମେ କି ଜାଣିଚ ? ତୁମେ କି ଜାଣିଚ ?
କହ କହ ତେବେ ଗୃଧ୍ରରାଜ,
ପ୍ରିୟାର ବାରତା ପାଇଲେ ରହିବ
ଜୀବନ ଆଜ ।"

"ଶୁଣ ତେବେ ଶୁଣ ସକଳ ଚରିତ
କହୁଅଛି ମୁହିଁ ତୁମର ଆଗେ,
ସୁଖେ ବସିଥିଲି ଶାଲ୍ମଳୀ ତରୁ
ଶିଖର ଭାଗେ ।

ଦେଖିଲି ସହସା କଂପିତ କରି
ନୀଳ ଗଗନର ଶୂନ୍ୟ ପଥ,
ଖର ଶର ବେଗେ ଛୁଟି ଯାଉଅଛି
ଏକଇ ରଥ ।

ଅବଳାର ଅତି କରୁଣ ବିଳାପ
ପାଷାଣ ଗଳାଇ ପଡ଼ୁଛି ଝରି,
ଧରଣୀର ବୁକେ ବର୍ଷୀର ଲୋଳ
ଆସାର ଝରି ।

ଆକୁଳ ପକ୍ଷେ ଗଗନ ବକ୍ଷେ
ଉଡ଼ିଯାଇ ଖରେ ବିଦ୍ୟୁତ
ଖରବାହୀ ସେଇ ପୁଷ୍ପ-ରଥର
ରୋଧିଲି ପଥ ।

"ପରିଚୟ ଗୃହେ" ଚିତ୍କାର କରି
ଗୃହିଲି ମୁଁ ତେବେ ଗୃହିଲି ମୁହିଁ ।
ଦର୍ପେ ବିହସି ଶୁଣାଇଲା ରଥୀ,
"କିଏ ରେ ତୁହି ?"

"କଏ ରେ ?" ଜଟାୟୁ ଗୃଧ୍ରନାୟକ
ଗରୁଡ଼ର ମୁହିଁ ବଂଶଧର,
ଧରଣୀର ତଳେ ମହାଶକ୍ତିର
ଅଂଶଧର ।"

"ମୋର ପରିଚୟ ଜାଣିବାକୁ ଚାହଁ ?
କଏ ରେ ପକ୍ଷୀ ଅକିଞ୍ଚନ ?
ମୁଁ ତ ସେଇ ଯାର ଭୟେ ଥରହର
ଜଗତ-ଜନ ।"

ସଜଳ ଅବଳା-କଣ୍ଠ ବାଜିଲା
"ପାପୀ ଏ ରାବଣ ଲଙ୍କାରାଜ,
ରାମବଧୂ ମୁହିଁ, ବଳେ ମୋତେ ଧର
ନେଉଛି ଆଜ ।

ରାମ ଲକ୍ଷ୍ମଣ ଯାଇଥିଲେ ଯେବେ
ଦୂର ଗହନକୁ ମୃଗୟା ଆଶେ,
ଚୋର ଆସି ମତେ ନେଇ ଯାଉଛି ଏ
ଆପଣା ବାସେ ।"

"ଜାଣିଲି, ଜାଣିଲି ପରିଚୟ ତବ
ଛାଡ଼ ଅବଳାରେ ଲଙ୍କାସାଇଁ,
ନୋହିଲେ ଏଲାଗେ ସଜ ହୁଅ ତୁମେ
ଯୁଦ୍ଧପାଇଁ ।

"ଯୁଦ୍ଧ ପୁଣି ରେ ତୋହର ସଙ୍ଗେ"
ହସିଲା ଅସୁର ଅଟ୍ଟହାସେ,
ରଥ ଚାଳବାକୁ କହିଲା ସୂତରେ
ମନ୍ଦ୍ର ଭାଷେ ।

ରୋଷେ ଜଳି ଉଠି ଲମ୍ଫ ଦେଲି ମୁଁ
ଅଚରେ ସାରଥି ଅଶ୍ୱପରେ,
ରୋଷେ ଦୁରାଚାର ଆସନୁ ଉଠିଲା
ଖଡ଼ଗ କରେ ।

ଚଞ୍ଚୁ-ନଖର-ଆୟୁଧେ ମୋହର
ଆଘାତ ହାଣିଲି ବାରକୁ ବାର,
ରକତ ନେଲି ମୁଁ, ମୋ ଦେହରୁ ଦେଲି
ରକତ-ଧାର ।

ନୟନେ ଦେଖିଲି ସାଥିରେ ମୋହର
ମିଳିଗଲେ କାହୁଁ ପଲକେ ଆସି
ବାୟସ, ଆଚାପୁଲି, ଶ୍ୟେନ, ପାରାବତ
ବିହଗରାଣି ।

ଊର୍ଦ୍ଧ୍ୱେ ଯାଇ ମୁଁ ଦୂରପଡ଼ି ତହିଁ
ବସିଗଲି ତାର ପୃଷ୍ଠପରେ
ଦକ୍ଷ ପକ୍ଷ ଧଇଲା ମୋର ସେ
ଦୃପ୍ତ କରେ ।

ଜରା-ଜର୍ଜର ବୟସ ମୋହର
ଜୀବନ ମୋହର ଦେହ ରଖୁପାଇଁ,
ବିଶ୍ୱମଣ୍ଡଳରେ ଆଜ ମୁଁ ତ ଲଢ଼ି—
ପାରିଲି ନାହିଁ ।

ତାପରେ ତାପରେ ଖର ବିଶିଖେ
ଖଡ଼ଗେ ହାଣିଲା ପକ୍ଷ ଦୁଇ,
ଗଳିତ ଉଲ୍‌କା ପରାଏ ଭୂତଳେ
ପଡ଼ିଲି ମୁହିଁ ।

ନିର୍ବାଧେ ତହୁଁ ରଥ ଘେନଗଲା
ଦକ୍ଷିଣ ଦିଗେ ଲଙ୍କା ଆଡ଼େ,
ମୁଁ ଏବେ ପଡ଼ିଚି ଏଇ ପଥେ ମୋର
ମରଣ-ଗ୍ରାସେ ।

ତୁମର ବାରତା ତୁମକୁ ଏ ଦେଲି,
କର୍ମ ମୋହର ହୋଇଲା ଶେଷ,
ଚଳିଲି ମୁଁ ଏବେ ପରପାରେ ଛେଡ଼ି
ମର୍ତ୍ତ୍ୟଦେଶ ।

କହୁଁ କହୁଁ ଆହା ଆଖିର ପଲକେ
ଗୃଧ୍ର-ସେନାନୀ ବୁଜିଲା ଆଖି,
ବିହଗଗଣଙ୍କର କରୁଣ ବିଳାପେ
ଉଠିଲେ ଡାକ ।

ବନର ବିହଗ ବୃନ୍ଦ ହୋଇ ଚହିଁ
ଭାସିଲେ ଆକୁଳ ଅଶ୍ରୁ ପୂରେ
ରାମ ଲକ୍ଷ୍ମଣ ଅଶ୍ରୁ ଢାଳିଲେ
ସକଳ ଭୁଲେ ।

"ମୋହର ସକାଶେ ଜୀବନ ଢାଳିଲ
ମୋ ବାରତା ଦେଇ ବୁଜିଲ ଆଖି,
ଜଟାୟୁ, ମୁଁ ଏବେ ନିସ୍ତବ୍ଧିତ
ଯଥା ଏ ଶାଖୀ ।"

ଚକିତ ରାମ-ଅନୁଜ ବୋଇଲେ
"କିବା ଦେଖୁଅଛି ନୟନେ ମମ,
ଏଲଗେ ଏସବୁ ଲାଗୁଅଛି ମତେ
ସ୍ୱପ୍ନସମ ।"

ପାଳକ ଗୋଟିଏ କରେ ତୋଳି ରାମ
ବୋଇଲେ "ଜଟାୟୁ, ଅମର ତୁମେ,
ତୁମର ସମାନ ଅଛଇ କି ପ୍ରାଣ
ମର୍ତ୍ତ୍ୟଭୂମେ ?"

---




ଘାର୍ତ୍ତ-ଶିର ସାରମେୟ
   ରୁଧିରାକ୍ତ ବିକୃତ ବଦନେ
ଧୀରେ ଆସି ଛିଡ଼ା ହେଲା
   ଅଯୋଧ୍ୟାର ଧର୍ମାଧିକରଣେ ।

"ଧର୍ମ ଅବତାର ତୁମ୍ଭୁଁ,
   ପଦେ ମୋର ଏଇ ନିବେଦନ,
ଏଇ ଶାନ୍ତିପୁର ଗ୍ରାମେ
   ରହେ ଏକ ଭିକ୍ଷୁକ ବ୍ରାହ୍ମଣ ।

ନାମ ତା ସର୍ବାର୍ଥସିଦ୍ଧି ।
ଅପରାଧ ମୋର କିଛୁ ନାହିଁ
ଯଷ୍ଟିର ପ୍ରହାରେ ଏଇ
ମଥା ମୋର ଦେଇଛ ଫଟାଇ ।"

ରାଜା ରାମ ସଙ୍ଗେ ସଙ୍ଗେ
ବରଗିଲେ ଦୂତ ବେଗବନ୍ତ,
କ୍ଷିପ୍ର ପଦେ ବିପ୍ର ଆସି
ଶ୍ରୀରାମ୍ମୁରେ ହେଲା ଉପଗତ ।

"ଅଭିଯୋଗୀ ଏ ଶ୍ୱାନରେ
ତୁମେ ଟିକ୍ କରିଚ ପ୍ରହାର ?"
"ସତ୍ୟ ଆଜ୍ଞେ ମହାରାଜ,
କରିଅଛି ନିଷ୍ଠୁର ବେଭାର ।"

"କାହିଁକି ?" "ଭିକ୍ଷାର ଅର୍ଥେ
ଅସମୟେ ଯାଇଥିଲି ମୁଁ ତ ।
ଭିକ୍ଷା ମିଳିଲା ନ, ଦୁଃଖେ
ଗୃହ ମୁଖେ ଫେରୁଥିଲି ଦ୍ରୁତ ।

ମଧ୍ୟ ପଥ ଆବୋରି ଏ
ଶୋଇଥିଲା 'ଛାଡ଼ ପଥ ଛାଡ଼'
ପଥ ଛାଡ଼ ଯାଉଁ ଯାଉଁ
ରୋଷଭରେ କଲି ମୁଁ ପ୍ରହାର ।

ବିନା ଦୋଷେ ମାରିଚି ମୁଁ
   ଯେଉଁ ଦଣ୍ଡ ଆଜ୍ଞା ହେବ ଦେବ,
ଅମ୍ଳାନ ବଦନେ ଏବେ
   ଅଭିଯୁକ୍ତ ମଥା ପାତି ନେବ ।"

"ତୁମ ପାଇଁ ହେ ବ୍ରାହ୍ମଣ
   ଦଣ୍ଡ କିନ୍ତୁ ଗୁରୁ ହେବ ଅତି,
ଅଭିଯୋଗୀ ମତ ନେଇ
   ବିଚାର ମୁଁ କରିବ ନିଷ୍ପତ୍ତି ।"

"ଯେଉଁ ଦଣ୍ଡ ମହାରାଜ,
   ଇଚ୍ଛିବ ଏ ଦୋଷହୀନ ବାଘ
ନମଇ ଦଣ୍ଡ ନେବା ପାଇଁ
   ପ୍ରସ୍ତୁତ ମୁଁ ଅଛି ଅପରାଧୀ ।"

ତା' ପରେ ବୋଇଲେ ରାଜା
   "ସାରମେୟ କି ଇଚ୍ଛା ତୁମର ?"
"ଅକିଞ୍ଚନ ଅର୍ଥୀ ମୁହିଁ,
   ବିଚାରକ ନୁହେ ବିଜ୍ଞବର ।"

"କିବା ଦଣ୍ଡ ଦେଲେ ଏବେ
   ତୁମ ପ୍ରାଣେ ହେବ ଟିକେ ସୁଖ ?
ପ୍ରତ୍ୟର୍ଥୀ ସର୍ବାର୍ଥସିଦ୍ଧି
   ତହିଁକ ତ ନୁହଇ ବିମୁଖ ।"

ନତ ଶିରେ, ନତ ଗିରେ
ଜଣାଇଲା ଅଭିଯୋଗୀ ଶ୍ୱାନ,
"ଦୀନର ଏ ହୀନ ବାକ୍ୟେ
ହେଉ ପ୍ରଭୁ ଦିବ୍ୟ ଅବଧାନ ।

କାଳଞ୍ଜରେ ମହାରାଜ
ଶୂନ୍ୟ ଅଛି କୁଳପତି-ପଦ
ବ୍ରାହ୍ମଣକୁ ଦିଅ ତାହା
ତହିଁ ମୋର ପରମ ଆନନ୍ଦ ।"

ତା ପରେ ବୋଇଲେ ରାଜା,
"କହୁଅଛ ବିଚିତ୍ର ପ୍ରକାର,
ଅପରାଧୀ ବ୍ରାହ୍ମଣରେ
ଶାସ୍ତି ନୁହେ ଏ ଯେ ପୁରସ୍କାର !"

"ପୁରସ୍କାର ନୁହେ ପ୍ରଭୁ,
ଏ ତ ଦଣ୍ଡ ହେଉ ବିଚାରଣା,
ଦାରିଦ୍ର୍ୟର କଶାଘାତେ
ବୁଦ୍ଧି ଯାର ହେଉଅଛି ବଣା,

ଦରିଦ୍ର ଭିକ୍ଷୁକ ଦ୍ୱିଜ
ଲଭୁ ଧନ, ଲଭୁ ସନମାନ,
ସୁଖ ସମ୍ଭୋଗରେ ରହି
ସାଧୁ କରୁ ସାଧୁ ଅବଦାନ ।

ଧନ ମାନ ଉଚ୍ଚାସନେ
 ଥାଏ ନା ତ ଫମ୍ବେଗ କେବଳ !
ଶତ ପ୍ରଲୋଭନେ ତହିଁ
 ଅଛଇ ତ ପରୀକ୍ଷାର ସ୍ଥଳ ।

ଅପରାଧୀ ବ୍ରାହ୍ମଣରେ
 ମହାରାଜ ମିଳୁ ସେଇ ଦଣ୍ଡ,
ଅକାଳେ ଦୟା ଯେବେ
 ଦଅ ମୋରେ ଆନନ୍ଦ ଅଖଣ୍ଡ ।"

ଶୁଣୁଥିଲେ ସଭାସଦ
 ଶୁଣୁଥିଲେ ସଚିବ ସୁମନ୍ତ୍ର,
ଜଣାଇଲେ "ମହାରାଜ
 ଅର୍ଥୀ ଶ୍ୱାନ କେଡ଼େ ପ୍ରାଣବନ୍ତ ।"

ନୃପତି ବୋଇଲେ "ଶ୍ୱାନ,
 ଯା କହିଲ ହେଲା ଏବେ ତା'ଇ,
ହେ ବିପ୍ର, ପ୍ରସ୍ତୁତ ହୁଅ,
 ଏବେ ତୁମ ଶାସ୍ତି ନେବା ପାଇଁ ।"

---



୧

ହିମାଦ୍ରିର ଚରଣତଳେ
ମାଲିନୀ-ତୀରବନେ
କମ୍ର ଏକ ସଦ୍ୟ ଶିଶୁ
ଶୋଇଛି ନିରଜନେ ।

କେ ଜାଣି କଆଁ ପାଶରେ କାହିଁ ?
ଜନନୀ ନାହିଁ, କେହି ତ ନାହିଁ ।

ତରୁର ଡାଳ ଉପରେ ଥାଇ
ବଢ଼ାଉଅଛି ଛାୟା,
ମରୁତ-ଧାରା ବହୁଛି ଧୀର
ଆଉଁଷି ଦେଇ କାୟା ।

ଉପେକ୍ଷଣ

୨

ମରୁତଠାରୁ ମାଳତୀ ନଣ୍ଡ
ପାଇ ସେ ସମାଚାର
ପଠାଇ ଦେଲା ତାହାର ହାତେ
ଶୀକର-ଉପଚାର ।

ଦେଖିବ ବୋଲି ଆକୁଳେ ସେହୁ
ବାରକୁ ବାର ତୋଳିଲା ତେଜ ;

ପଲ୍ଲବର ଅନ୍ତରାଳ୍ପୁ
ଚୁହାଁଲା ଫୁଲବାଳା
"ଭୂତଳେ ଆହା ପଡ଼ିଚ ଖସି
ସ୍ୱର୍ଗର ଏ ତାରା ।"

୩

ଗୃଧ୍ର ଏକ ଊର୍ଦ୍ଧ୍ୱେ ସେଇ
ପଥରେ ଯାଉଁ ଯାଉଁ
ମାଂସାହାର ମିଳିଲା ବୋଲି
ଭାଳିଲା ଚୁହୁଁ ଚୁହୁଁ ।

ହରଷଭରେ ଖସିଲା ଖରେ
ଦେଖିଲା ଆସି ଭୂମିର ତଳେ,

ଲଳିତ ଏକ ନୂତନ ଶିଶୁ
ହରିତ ଘାସଘରେ
କାତର ତୋଳେ ଅନାଉଅଛି
ତରଳ ନୟନରେ ।

୪

ମାଳିନୀ ନଦୀ ଜଳକୁ ଅବା
ଯାଇଛି ତାର ମାତା ?
କପର ଅବା ଯାଇଛି ଗୁଡ଼ି
ଏକା ଏ ନବଜାତା !

ଚରଣପାତ ଶୁଭିଲା ଏଇ !
ଚମକି ଗଲା ଅଇଲା କେହି,

ନଇଲେ କେହି । ତଥାପି ତହୁଁ
ଅଳପ ଦୂରେ ଯାଇ
ଶିଶୁର ମୁଖେ ପଲକ ତୋଳ
ରହିଲା ଖାଲି ଗୃହିଁ ।

୫

ପୂରୁବ ବେଳ ଉଠିଲା ଦୂରେ
ଉର୍ଦ୍ଧ୍ୱ ନଭ ଆଶେ,
ଜନମୀ କାହିଁ ଫେରିଲା ନାହିଁ
ଆତ୍ମଜାର ପାଶେ ।

ଗୃଧ୍ର ତହୁଁ ପାଶକୁ ଯାଇ
ଗଭୀର ତର ମନରେ ଧାଇ

ପକ୍ଷ ମେଲି ଶିଶୁରେ ଦେଲା
ସେନହଭରି ଛାୟା
ତପନ-ତାପୁଁ ଉଦ୍ଧାର କଲା
ଶିରୀଷ-ଫୁଲ କାୟା ।

୬

ଗହନ ପଥେ କଣ୍ୱ ମୁନି
ମିଳିଲେ କାହୁଁ ଆସି,
ବହଗବର ଫଗ୍ଧିଲି
ଦରଦ ପରକାଶି ।

ତାପସ ଆଗେ ପକ୍ଷ ଟେକି
ଦେଖାଇ ଦେଲି, "ଦେଖୁଚ ଏ କି ?"

ଆଖିର ଜଳେ କହିଲି କଥା,
ସକଳ ସମାଚାର
ଶିଶୁର ପାଶୁଁ ଘୁଞ୍ଚିଗଲି,
"ନେଜନ ଏ ଉପହାର ।"

୭

ଶିଶୁରେ ବେନି ବାହୁରେ ନେଇ
ବୁକରେ ତୋଳି ଧରି,
ଶକୁନ୍ତରେ ଗୁହିଁଲେ ମୁନି
ନୟନେ ନୀର ଭରି ।

ପ୍ରାଣର ଭରା ଆବେଗବଶେ
ବୋଇଲେ ବାଣୀ ପୀୟୂଷରସେ,

"ମାଂସଭୁକ୍ ଗୃଧ୍ର ଆରେ,
ସୁକୃତର ବଳେ,
ପୁଣ୍ୟଶ୍ଳୋକ ହେଲୁ ରେ ଆଜ
ବିଶ୍ୱ ଧରାତଳେ ।

୮

ଶିଶୁରେ ରକ୍ଷି "ଶକୁନ୍ତ ରେ"
କହିଲେ ପୁଣି ବାଣୀ,
"କଏ ସେ ପିତା, କଏ ସେ ମାତା
ପାରୁଚ ମୂର୍ଖ ଜାଣି ।

ତ୍ୟକ୍ତା ଏଇ ସଦ୍ୟଜାତା,
ଇଆର ତୁମ୍ଭ ଜୀବନଦାତା,

ଶକୁନ୍ତ ରେ ଏ ତୋର ଦାନ
ରହୁ ଧରାଧାମେ,
ଏ ଶିଶୁ ଆଜ ଶକୁନ୍ତଳା
ହେଲ ରେ ତୋହ ନାମେ ।"

---

ଚେଇଣି




୧

କପୋତ କପୋତୀ ବେନ
ଫେରିଲେ ଆଧାର ଘେନ
ଦେଖିଲେ ଯେ ଶୂନ୍ୟ ଏବେ ନୀଡ଼,
ପୁତ୍ର କନ୍ୟା କେହି ନାହିଁ,
'କାହିଁ ଗଲେ' 'ଗଲେ କାହିଁ,'
ଅଶ୍ରୁ ଜଳେ କାନ୍ଦିଲେ ନିବିଡ଼ ।

୨

ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ ଉଡ଼ି ଉଡ଼ି
ବନ ପଥେ ଘୂରି ଘୂରି
ଅଣ୍ଡଦୂରେ ଦେଖିଲେ ଭୂତଳେ,
ନୟନ-ସଂଖାଳି ଦୋ'ଟି
ଶୋକେ ଯାଉଛନ୍ତି ଲୋଟି
ଲୁବ୍ଧକଙ୍କର ବାଗୁରା ଉପରେ ।

୩

ଉପରେ ଚଙ୍କର ନାହିଁ
ଉଚ୍ଚ ସ୍ୱରେ ଜଣ ପାହି
ଡାକ ଦେଲେ କପୋତ ଦମ୍ପତି,
ଭାଇ ଭଗ୍ନୀ ମଥା ତୋଳି
କାତର ଚୁହାଣୀ ଘୁଳି
ଅନାଇଲେ ଢକଳଢେ ଅନ୍ତ ।

୪

ପାଷାଣରେ ବାନ୍ଧ ଦିଆ
ବ୍ୟାଧ ହୋଇଥିଲା ଠିଆ,
ଦେଖୁଥିଲା ମନର ଉଲ୍ଲାସେ,
ଘୂରୁଛନ୍ତି ବେନି ପ୍ରାଣୀ
ଝୁରୁଛନ୍ତି ବୁକୁ ହାଣି,
କେବେ ଦୂରେ କେବେ ଅବା ପାଶେ ।

୫

"ଗଲେ ମୋ ସଙ୍ଗାଳ ଦୁଇ,
ଥାଅ ତୁମେ, ଯାଏ ମୁହିଁ,
    କାହିଁକି ସେ ଥିବ ଏ ଦୁଃଖରେ ?"
ପନ୍ତରେ କପୋତଆଣୀ
କହୁଁ କହୁଁ ପ୍ରାଣବାଣୀ
    ଲେଟିଗଲା ବତଂସ ମୁଖରେ ।

୬

"ପ୍ରାଣ ଦେଲୁ ତୁମ୍ଭ ପ୍ରିୟା"
କପୋତ କହଇ, "କିଆଁ
    ହତଭାଗ୍ୟ ରହିବ ମୁଁ ଆଜ ?"
ପତ୍ନୀ, ପୁତ୍ର କନ୍ୟା ପାଶେ
ନିଷାଦର କାଲବାସେ
    ଝାମ୍ପ ଦେଲା, "ଏ ଜୀବନ ଯାଉ ।"

୭

ନିର୍ବାଣ-ଉଚ୍ଛ୍ୱାସ ଧରି
ଦୀପ ଯଥା ଉଠେ ଜଳି
    ମୁକ୍ତ ହେଲେ ପକ୍ଷୀ-ପରିବାର ।
କଳ କୋଳାହଳ ଛୋଳି,
ମନ ପ୍ରାଣ ଦେଲେ ଖୋଲି,
    କ୍ଷଣକରେ ଅମୃତ-ସଂସାର ।

୮

ଗୋଟାଇ କ୍ଷିପ୍ର ଜାଲ
ହର୍ଷେ ଘେନ ପକ୍ଷୀ-ଘର
ଗୃହ-ପଥେ ଫେରିଲା ନିଷାଦ,
ମାନବ-ଜନମ ପାଇ
ଲୁବ୍ଧକ ଜାଣିଲା ନାହିଁ,
ଅତୁଳ ସେ ମୃତ୍ୟୁର ଆସ୍ୱାଦ ।

---




ଊର୍ଦ୍ଧ୍ୱନଭେ ଚଣ୍ଡ ଭାନୁ
ବରଷୁଅଛି ଅନଳ-ଧାର
କାତର ହୋଇ ଊର୍ଦ୍ଧ୍ୱମୁଖେ
ଚାହୁଁଚି ଧରା ବୃଷ୍ଟିଧାର ।

ବନର ଏକ ସୀମାନ୍ତରେ
ଚାଲିଚି ଏକ ପାନ୍ଥ
ଚରୁର ଘୁଟ୍ଟେ ବାରକୁ ବାର
ବସୁଚି ହୋଇ କ୍ଳାନ୍ତ ।

ଜଠର-ଜ୍ୱାଳା ନ ପାରି ସହି
ବନର ଏକ ବାନର ପାଶେ
ମନର କଥା ମୁକ୍ତ କଲା
ମିନତିଭରା କୋମଳ ଭାଷେ—

"ହନୁର ତୁଷ୍ଟ ବଂଶଧର,
ବାରେକ ଆଜ ଧର୍ମ କର,
ଆହାର କିଛି ଦେ,
ବୁଭୁକ୍ଷିତ ପାନ୍ଥର ଏ
ଆଶୀର୍ବାଦ ନେ ।"

ବାନର ତହୁଁ କ୍ଷିପ୍ରତର
ଥୋଇଲା ଜଳ, ଥୋଇଲା ଫଳ ।

"ଏ ଲାଗେ ତୋର ଏ ଫଳ ଖାଇ
ତୃପ୍ତି ମୋର ଆସିବ ନାହିଁ ।"
ଏଇଆ କହି ପାନ୍ଥ
ଗହନ ବନେ ଅଚିରେ ହେଲା
ଦୃଷ୍ଟି-ଅନ୍ତର୍ଦ୍ଧାନ ।

"ଶୃଗାଳ ପାଶେ କହିଲା ଯାଇ
ଭୋଜନ କିଛି ମିଳିବ ଭାଇ ?"

ଅଣ ତରଶୀ

ଶୃଗାଳ କିଛି ମାଂସ ଥୋଇ
କହିଲା ଅତି ବିନମ୍ରୀ ହୋଇ—
"ଅତିଥିବର,
ଯତନେ ଏବେ ସିଦ୍ଧ କର ।"

"ଏଲଗେ ଏତେ କରିବା ପାଇଁ
ନାହିଁ ରେ ମୋର ଶକ୍ତି ନାହିଁ ।"
ଏଇଆ କହି ପାନ୍ଥ
ଗହନ ବନେ ଅଚିରେ ହେଲା
ଦୃଷ୍ଟି-ଅତିକ୍ରାନ୍ତ ।

କଠାଶ ପାଶେ ମିଳିଲା ଯାଇଁ
"ଭୋଜନ କିଛି ଦେବୁ କି ଭାଇ ?"

କଠାଶ ଚଞ୍ଚୁଁ ଷିପ୍ରତର
ଥୋଇଲା ମୀନ, ଥୋଇଲା ଜଳ ।
"ଅତିଥି ବର,
ଯତନେ ଏବେ ସିଦ୍ଧ କର ।"

"ଏଲଗେ ଏତେ କରିବା ପାଇଁ
ନାହିଁ ରେ ମୋର ସମୟ ନାହିଁ ।"
ଏଇଆ କହି ପାନ୍ଥ
ଗହନ ବନେ ଅଚିରେ ହେଲା
ଦୃଷ୍ଟି-ଅତିକ୍ରାନ୍ତ ।

ଶଶକ ପାଶେ କହିଲା ଯାଇ,
"ଭୋଜନ କିଛି ଦେବୁ କି ଭାଇ ? "

ଶଶକ ଅତି ହର୍ଷଭରେ
କହିଲା ଧୀର ନମ୍ର ସ୍ୱରେ—
"ଅତିଥି ତୁମେ ପୁଣ୍ୟଶ୍ଳୋକ
ସହଜେ ମୁହିଁ ଆରଣ୍ୟକ,
 ପାଇବି କାହୁଁ ଅନ୍ନ ସୂପ ବ୍ୟଞ୍ଜନ ?
ତୃପ୍ତ କରି
ପାରିବି କାହୁଁ
ଭୋଜନ ଦେଇ ତୁମରି ମନୋରଞ୍ଜନ ?
ଅତିଥି, ତବ ଚରଣତଳେ
ଅର୍ପୁ ଅଛି ହରଷଭରେ
 ଏ ମୋର ତନୁ ତେବେ,
ମାଂସ ମୋର ଭୁଞ୍ଜି ତୁମେ
 ତୃପ୍ତ ହୁଅ ଏବେ ।"

ଅତିଥି ତହୁଁ କହିଲେ ବାଣୀ—
"ଜଗତେ ତୁହି ଜୀବନଦାନୀ,
ନିଜକୁ କଲୁ ସମର୍ପଣ
 ଅତିଥି-ସେବା ପାଇଁ
ତୋହରି ପରି ଶୁଦ୍ଧମନା
 ମରତତଳେ କାହିଁ ?

ଏକ ବିଚକ୍ଷଣୀ

କ୍ଷୁଧାରେ ଯଟେନ୍ତ ଯାଉ ମୋ ପ୍ରାଣ
ଦୁଃଖ ନାହିଁ ମୋର,
କପରି ତୋର ଜୀବନ ହରି
କରିବ ପାପ ଘୋର ?”

ଶଶକ ଆଜ୍ଞା ନ କହି କଥା
ହୋଇଲା ତତପର
ଆଣିଲା ଜଳ, ଆଣିଲା ଜାଳ,
ଆଣିଲା ଖରତର ।

ଧୀରେ କଲା ଇନ୍ଧନରେ
ଅନଳ-କଣା ଦେଇ
ଯେମିତ ଶିଖା ଉଠିଲା ଜଳି
ଉଡ଼ିଲା ଚହିଁ ଡେଇଁ ।

ହୃଷ୍ଟ ହୋଇ କହିଲା ତହୁଁ
“ଭୋଜନ କର ମହାପ୍ରଭୁ ।”

କେ ଜାଣି କଆଁ ତା ଦେହୁଁ କାହିଁ
ଗୋଟିଏ ଲୋମ ପୋଡ଼ିଲା ନାହିଁ ।

ଅଗ୍ନି କୋଳୁ ଉଠାଇ ତାକୁ
ଉଦ୍‌ବେଗରେ ପାନ୍ଥ
ହୃଦୟ ଖୋଲି ବୋଇଲେ ବାଣୀ
ପୁଲକ-ପ୍ରୀତି-କାନ୍ତ—

"ନୁହେ ରେ ମୁହିଁ ବୁଭୁକ୍ଷିତ,
କ୍ଳାନ୍ତ ପଥଶ୍ରମୀ ,
ସ୍ୱର୍ଗରେ ମୁଁ ଅମରନାଥ
ଛଦ୍ମବେଶଧାରୀ ।
ଅବୋଧ ପଶୁ ଜନ୍ମ ପାଇ
ମହାନ୍ ତୁମ୍ଭ ଶଶୀ,
ଅତିଥି ଲାଗି ଜୀବନ ଦେଲୁ
ମହୀରେ ମହାଯଶୀ ।
ସ୍ୱର୍ଗେ ଛତେ ଦେବ ରେ ମାନ,
ଊର୍ଦ୍ଧ୍ୱେ ଛତେ ଦେବ ରେ ଥାନ ।"
ଏଇଆ କହି ପାନ୍ଥ
ସପନ ସମ ଅଚିରେ ହେଲା
ଦୃଷ୍ଟି-ଅନ୍ତର୍ଧାନ ।

ସନ୍ଧ୍ୟା ହେଲା···ଚନ୍ଦ୍ର ଉଇଁ
ଆକାଶେ ଦେଲା ଦେଖା,
ଦେଖିଲେ ଜନ··· ଚନ୍ଦ୍ରଦେହେ
ଶଶୀର ଛବି ଲେଖା ।




୧

ଉପବନେ ଯେବେ ମଧୁର ଗୋଲାପ
ପ୍ରଥମ ଉଠିଲା ଫୁଟି,
ମନ୍ଦର ମସ୍ତକ ସ୍ୱେରଇ ଅଧୀର
ସମୀରଣ ଗଲା ଛୁଟି ।

ନରମ ନରମ ପାଖୁଡ଼ା ତାହାର
ଚରଣେର ପାତେ ଦଳ ବାରବାର

ମଧୁଳିଟ ଅଳି
ଝଙ୍କାର ତୋଳି
ମଧୁରାଶି ନେଲା ଲୁଟି ।

୨

ପାଦପ ଡାଳରେ ଅନ୍ତରାଳରେ
ବସିଥିଲା ବୁଲ୍‌ବୁଲ୍,
ଗୋଲାପ ଡାଳକୁ ଉଡ଼ିଯାଇ ତାକୁ
ଅନାଇଲା ଜୁଲ୍‌ଜୁଲ୍ ।

ପାଣ୍ଡୁର ଦେଖି ବର୍ଣ୍ଣ ତନୁର
ମରମେ ମରମେ କ୍ଷୁର୍ଣ୍ଣ ଆତୁର

ମୁଗ୍ଧ ବଧୂର,
ସ୍ନିଗ୍ଧ ମଧୁର
ତୋଳଲା ଅତୁଳ ସୁର୍ ।

୩

"ମନ ମତାଣିଆ ତୋର ମଦକର
ଜଗତରେ କାହିଁ ତୁଲ ?
ଧୂସରବରନ ଗଣ୍ଡ ତୋହର
ଆହା ରେ ଗୋଲାପ ଫୁଲ ।

ତୋ ଗଣ୍ଡରେ ଦେବ ମୋର ଲହୁଧାର
କର ଦେବ ମୁହିଁ ତତେ ଲହୁ-ଲାଲ ।"

ଗୋଲାପ ହସିଲା
ସରାଗେ ଭାଷିଲା—
"ପ୍ରିୟ ମୋର ପ୍ରେମାତୁର ।"

୪

କଣ୍ଟକ ପରେ ଗୋଲାପର ପ୍ରିୟ
ଗୁଞ୍ଜି ଗୁପିଦେଲା ଚହୁଁ,
ଦେଖିଲା ଗୋଲାପ ସେନ୍ତକ ଲୋକ୍ଟଚ
ଯେନ୍ତକ ଯାଉଚ ଲହୁ ।

"ସବୁ ଲହୁ ଦେଇ ମୁହିଁ ବୁଲ୍‌ବୁଲ୍,
କରି ଦେବି ତତେ ଲାଲ ବାଲ୍‌କୁଲ୍

ଦୁନିଆ ଯାକରେ
ସବୁରି ପାଖରେ
ତୋର ସନମାନ ରହୁ ।"

୫

ଗଗନ ଭୁବନ ଉଜଳନ କରି
ଖେଳାଇ ହୀରକ-ଶାନ୍ତି
ଉପରେ ତଳରେ ଜଳରେ ଥଳରେ
ହସିଲା ଜୋଛନା କାନ୍ତି ।

ବାଆ ବହି ଗଲା ସୁଲ୍ ସୁଲ୍ ସୁଲ୍,
ଦରଦର ଗୀତ ଗାଇ ବୁଲ୍‌ବୁଲ୍

ଗୋଲାପ ଶାଖାରେ
କଣ୍ଟକ--ଜାଲେ
ଭିଡ଼ିଲା ନଗନ ଗାତ୍ର ।

୬

ପ୍ରାଚୀର ଆକାଶେ ରୁଚିର ବିକାଶେ
ଉଠିଲେ ଲୋହିତ ରଙ୍ଗ,
ଗୋଟିଏ କରୁଣ, ଗୋଟିଏ ଅରୁଣ
ଦେଖିଲେ ଦୁଇଟି ଛବି ।

ହତ ବୁଲ୍‌ବୁଲ୍ ବିକ୍ଷତ ବୁକେ
ଲଗନ ହୋଇଛି କଣ୍ଟକ-ମୁଖେ ।

ଗୋଲାପ ଫୁଟିଛି,
ଲାଲ ଉକୁଟିଛି
ରକତ-ଆସବ ଲଭି ।

---




୧

ସନ୍ତାପିତ ଜୀବନେ ଯଥା ଅଶ୍ରୁ-ଆବେଦନ
ସୃଜଇ ଟିକେ ସରଗ-ଶୁଭାଶୀସ୍,
ବିପୁଳ ମରୁ-ଉରସ ପରେ ଶୀର୍ଣ୍ଣ ମରୁଝର
ଗଢିଛି ଏକ କ୍ଷୁଦ୍ର ଓଏସିସ୍ ।

ତାହାର କୋଳେ ଆଦରସ୍ୱେଳେ ଜ୍ଞାତିବନ୍ଧୁ ମେଳେ
ପାଗଳ ଏକ ଇଗଲ କରେ ବାସ,
ମରୁର ଝଡ଼, ବାଲୁକାମାଡ଼, ଚଣ୍ଡ ଖର ଶୀତ
ନିର୍ବିକାରେ ସହଇ ବାରମାସ ।

ମରୁର ନଭେ ଅନ୍ଧାରଆ ସକାଳୁ ଉଡ଼ଯାଏ,
ସନ୍ଧ୍ୟାବେଳେ ଫେରଇ ପୁଣି ନୀଡ଼େ,
ପତ୍ନୀ ଭୁଲେ, ଶାବକ ମେଳେ ଯାପଇ ସୁଖ-ନିଶା
ସକାଳେ ପୁଣି ଛୁଟଇ କେଉଁ ତୀରେ ।

୨

ଅଭିଯାତ୍ରୀ ଇଗଲ ଥରେ ପୂର୍ବ ଦିଗେ ଗଲା,
ବହୁତ ଦୂରେ ସିନ୍ଧୁ ଉପକୂଳେ,
ସଲିଳ ଯହିଁ ଫେନିଳ ବୀଚି ଅଟ୍ଟହାସ ତୋଳେ
ଦେଖିଲା ବସି ପୁଲିନ ତରୁତଳେ ।

ସାଗରଚର ମଗର କହେ, "ଆଗନ୍ତୁକ କିଏ ?"
"ମରୁର ଏକ ଇଗଲ ମୁହିଁ ଭାଇ ।"
"ଆମ ଏ ଦେଶେ ଆଜିକ ରହ, ଅତିଥି ହୁଅ ବାରେ ।"
"ଘରେ ମୋ ଜାୟା ଶାବକ ଥିବେ ଚାହିଁ ।"

"ଆମ ଏ ଦେଶେ ରହୁନ ଆସି ପତ୍ନୀ ଶିଶୁ ଘେନି ?"

"ଗୁଡ଼ କି ହୁଏ ଜନମମାଟି ପ୍ରିୟ ?
ତୁମ ଏ ଦେଶୁ ଦେବ କି କଢ଼ି ନେବ ମୋ ମରୁ ଦେଶେ ?"

"ମୁକ୍ତ ସବୁ ଯାହା ଇଚ୍ଛା ନିଅ ।"

"ଯାଉଛି ଭାଇ ବିଦାୟ ଦିଅ; ଆସିବ ପୁଣି କେବେ,
ତୁମର ସ୍ନେହ ପାରିବ ନାହିଁ ଭୁଲି ।"
ଇଗଲ ତହୁଁ ଶୁକ୍ତିଟିଏ ଚଞ୍ଚୁପୁଟେ ଧରି
ଫେରିଲା ଖରେ ଆପଣା ମରୁପୁରୀ ।

ଅଣେସ୍ନାଳଣୀ

୩

ଅଭିଯାତ୍ରୀ ଇଗଲ ଦିନେ ପଶ୍ଚିମକୁ ଗଲା,
ବସିଲା ଏକ ରୁକ୍ଷ ଗିରି-ଶିରେ,
ସୌରକରେ ଉଜଳ ହୋଇ କ୍ଷୁଦ୍ର ଏକ ମେଘ
ଝଲକୁଥିଲା ସୁଦୂର ନଭ-ଶିରେ ।

ବାଦଲ ତହୁଁ କହିଲା ଡାକି; "ଆଗନ୍ତୁକ କିଏ ?"
"ମରୁର ଏକ ଇଗଲ ମୁହିଁ ଭାଇ ।"
"ଆମ ଏ ଦେଶେ ଆଜିକ ରହ, ଅତିଥି ହୁଅ ବାରେ ।"
"ଘରେ ମୋ ଜାୟା ଶାବକ ଥିବେ ଚାହିଁ ।"

"ଆମ ଏ ଦେଶେ ରହନ ଆସି ପତ୍ନୀ ଶିଶୁ ଘେନ ?"

"ଛୁଡ଼ି କି ହୁଏ ଜନମ ମାଟି ପ୍ରିୟ ?
ତୁମ ଏ ଦେଶୁ ଦେବ କି କିଛି ନେବା ମୋ ମରୁଦେଶେ ?"

"ମୁକ୍ତ ସବୁ ଯାହା ଇଚ୍ଛା ନିଅ ।"

"ଯାଉଚି ଭାଇ ବିଦାୟ ଦିଅ, ଫେରିବ ପୁଣି କେବେ
ତୁମରି ସ୍ନେହ ପାରିବି ନାହିଁ ଭୁଲି ।"
ଇଗଲ ତହୁଁ ଚଞ୍ଚୁପୁଟେ ଗୋଟିଏ ତୃଣ ଘେନି
ଫେରିଲା ଖରେ ଆପଣା ମରୁପୁରୀ ।

୪

ଅଭିଯାତ୍ରୀ ଇଗଲ ଦିନେ ଉତ୍ତରକୁ ଗଲା
ବହୁତ ଦୂରେ ଗହନ ବନ କୋଳେ,
ଦେଖିଲା ତହିଁ ପାଦପଲତା ଗୁଳ୍ମ ଶତ ଶତ,
ପୁଷ୍ପ ଫଳ ମାଳକୁ ମାଳ ଦୋଳେ ।

ବନସ୍ପତି କହଇ ଡାକି "ଆଗନ୍ତୁକ କିଏ ?"
"ମରୁର ଏକ ଇଗଲ ମୁହିଁ ଭାଇ ।"
"ଆମ ଏ ଦେଶେ ଆଜିକ ରୁହ, ଅତିଥି ହୁଅ ବାରେ ।"
"ଘରେ ମୋ ଜାୟା ଶାବକ ଥିବେ ରହିଁ ।"

"ଆମ ଏ ଦେଶେ ରହୁନ ଆସି ପତ୍ନୀ ଶିଶୁ ଘେନି ?"

"ଗୁଢ଼ କି ହୁଏ ଜନମମାଟି ପ୍ରିୟ ?
ତୁମ ଏ ଦେଶୁ ଦେବ କି କିଛି ନେବି ମୋ ମରୁଦେଶେ ?"

"ମୁକ୍ତ ସବୁ ଯାହା ଇଚ୍ଛା ନିଅ ।"

"ଯାଉଛି ଏବେ ବିଦାୟ ଦିଅ, ଫେରିବି ପୁଣି କେବେ
ତୁମର ସ୍ନେହ ପାରିବି ନାହିଁ ଭୁଲି ।"
ଇଗଲ ତହୁଁ ଚଞ୍ଚୁପୁଟେ ଗୋଟିଏ ଫଳ ଘେନି
ଫେରିଲା ଘରେ ଆପଣା ମରୁପୁରୀ ।

ଏକରତ୍ନଲକ୍ଷ୍ମୀ

*

ଅଭିଯାତ୍ରୀ  ଇଗଲ ଦିନେ  ଦକ୍ଷିଣକୁ ଗଲା
ବହୁତ ଦୂର ବହୁତ ଦୂର ଦେଶ,
ଦେଖିଲା ତହିଁ  ଶସ୍ୟଭରା  କଆଁଶ ମାଳ ମାଳ
ଘୂରିଚ ଯଥା ମଥାକୁ ଘନ କେଶ ।

କଆଁଶ ତହୁଁ କହଇ ଡାକ "ଆଗନ୍ତୁକ କିଏ ?"
"ମରୁର ଏକ ଇଗଲ ମୁହିଁ ଭାଇ ।"
"ଆମ ଏ ଦେଶେ ଆଜକ ରୁହ, ଅତିଥି ହୁଅ ବାରେ ।"
"ଘରେ ମୋ ଜାୟା ଶାବକ ଥିବେ ଚାହିଁ ।"

"ଆମ ଏ ଦେଶେ ରହୁନ ଆସି ପତ୍ନୀ ଶିଶୁ ଘେନ ?"

"ଛାଡ଼ି କି ହୁଏ ଜନମମାଟି ପ୍ରିୟ ?...
ତୁମ ଏ ଦେଶୁ ଦେବ କି କିଛି ନେବି ମୋ ମରୁଦେଶେ ?"

"ମୁକ୍ତ ସବୁ ଯାହା ଇଚ୍ଛା ନିଅ ।"

"ଯାଉଛି ଏବେ ବିଦାୟ ଦିଅ, ଫେରିବି ପୁଣି କେବେ,
ତୁମର ସ୍ନେହ ପାରିବି ନାହିଁ ଭୁଲି ।"
ଇଗଲ ତହୁଁ ଚଞ୍ଚୁପୁଟେ ଶସ୍ୟ-ଶିଷା ଘେନ
ଫେରିଲା ଖରେ ଆପଣା ମରୁଧୂଳି ।

୬

କାଫ୍ଲାର ଗ୍ଲୁଫ୍ଲା ଚରଣତଳେ ଶରଣ ଯେବେ ମାଗେ
ଦାରୁଣ ଯେବେ ଭାନୁ ବହ୍ନିମାନ୍ ,
ମରୁର ସେଇ ସବୁଜ ଧାରେ ଶ୍ରାନ୍ତ-ବନୋଦନେ
ମିଳିଲା ଦିନେ ଏକଇ କାରୱାନ୍ ।

ନିଷ୍ପଲକ ଦୃଷ୍ଟି ଦେଇ ଚାହୁ ଅନାଇଲା,
ପ୍ରଶ୍ନ ଏକ ଜାଗିଲା ମନେ ତାର,
"ଏ ଓଏସିସ୍ ନ ଥିଲା କାହିଁ ଏଡ଼େ ଋଦ୍ଧିମାନ୍
ନ ଥିଲା କାହିଁ ଏଡ଼େ ଚମତ୍କାର ।"

ଝରଣା-ବାରି-ସିକ୍ତ ବାୟୁ ବୀଜନ କରୁ କରୁ
କହିଲା, "ଆରେ ଯାତ୍ରୀ ତୁମେ ଜାଣ ?
ଅଭିଯାତ୍ରୀ ଇଗଲ ଏକ ଏଇଠି କରେ ବାସ
ଏ ନିସର୍ଗ-ଶୋଭା ତାହାର ଅବଦାନ ।"

---




ଅମ୍ବରତଳେ ଉଡ଼ି ଯାଉଁ ଯାଉଁ କପୋତଯୂଥ
ଦେଖିଲେ ବହୁତ ତଣ୍ଡୁଳକଣା
ଭୂତଳେ ପଡ଼ିଚି, ଉଦ୍ବେଳମନା!
ଆହାର-ଆଶାରେ ହୋଇଲେ ଆକୁଳ ହର୍ଷ-ରୁତ ।

"ଥାଉ ରେ" କହିଲେ କପୋତନାୟକ ଚିତ୍ରଗ୍ରୀବ
"ତଣ୍ଡୁଳକଣା ନିର୍ଜନ ବନେ
କାହୁଁ ଆସିବ ରେ ଭାବ ନାହିଁ ମନେ ?
ଇଥିର ଭିତରେ ବିପଦ ବିନା ରେ କଅଣ ଥିବ ?"

ପିଙ୍ଗଳ ନାମେ କପୋତ ଦର୍ପେ କହିଲା କଥା,
"ଜୀବନର ମଧ୍ୟେ ଜୀବିକାର ପାଇଁ,
ବହୁ ବିପଦ ଆସେ ଆରେ ଭାଇ,
ସେଲାଗି ଇମିତି ଡରିବା ଆମର ନିର୍ବୋଧତା ।

ଯେ ଯେଉଁ କରନ୍ତ ଆମର ପାଇଁକ ପାତଇ ଜାଲ,
ବିଷଧର ଆନଗ, ମହାବଳ ମୁଖେ
ପଡ଼େନ ସେ କେବେ କାଳ-ସମ୍ମୁଖେ ?
ତଥାପି ଗହନେ ଘୂରଇ ନାହିଁ କି ଆହାର ଭାଲ ?

ବିପଦେ ଡରିଲେ ଖାଦ୍ୟ ମିଳେ କି ଉପାୟବଳେ ?
ହୃଦୟେ ସାହସ ଧରି ଅବିରତ
ଆମେ ରେ ଖୋଜିବା ଜୀବିକାର ପଥ ।"
ତଣ୍ଡୁଳ-ଲୋଭେ ଖସିଲେ ସକଳେ ଭୂଇଁର ତଳେ ।

ତଣ୍ଡୁଳ ପରେ ବସୁ ବସୁ ଆହା କପୋତ-ଯୂଥି,
ଲାଗି ଗଲେ ତହିଁ ଲୁବ୍ଧକ-ଜାଲେ
ପଡ଼ିଗଲେ ତହିଁ ଲୁବ୍ଧକ-ପାଲେ,
ଭାଳିଲେ, "ଜୀବନ କି ବେଗେ ହାଇ ରେ ହୋଇଲା ଇତି !"

"ନିର୍ବୋଧତାର ଫଳ ହାତେ ହାତେ ମିଳିଲା ତେବେ,
ଦଳଯାକ ମିଳି ଉଚ୍ଚ ତାନରେ
ଭର୍ତ୍ସିଲେ ସେଇ ବୁଦ୍ଧିମାନରେ,
ତୋହ ବୁଦ୍ଧିରେ ପଡ଼ି ଆମେ ଏଇ ମଲୁ ରେ ଏବେ ।"

"କଅଣ ମିଳିବ ? ହିଂସା ଏବେ ଥାଉ ରେ ଥାଉ ।"
କପୋତନାୟକ ଧୀର ଗମ୍ଭୀରେ
ବୁଝାଇ କହିଲା ଧୃତଭରା ଗିରେ,
"ସମୟ ନାହିଁ ରେ ଏଥିରୁ କଅଣ ମିଳିବ ଆଉ ?

ଦୂର ବନେ ଅଛି ବନ୍ଧୁ ମୋହର ହିରଣ୍ୟକ,
ଦନ୍ତରେ ଏଇ ଜାଲ କାଟି ଦେଇ
ବିପଦରୁ ପାର କରିପାରେ ସେଇ,
ସଙ୍କଟେ ଆଜ ସେଇ ଏକା ଆମ ଉଦ୍ଧାରକ ।

ଜାଲ ଧରି ଚାଲ ଉଡ଼ିଯିବା ଆମେ ତାହାରି ପାଶେ
ଡେରି କର ନାହିଁ, ଏଇଲାଗେ ଆସି
ନିଠୁର ଶବର ଟାଣିଦେବ ଫାସି ।"
ଜାଲ ଧରି ତହୁଁ ଉଠିଲେ ସକଳେ ଊର୍ଦ୍ଧ୍ୱ ଆଶେ ।

"କି ହେଲା କି ହେଲା, ଅଦଭୁତ କଥା ହେଲା ରେ ଭଲା ।"
ନିଷାଦ ଭାଳିଲା ବିଷାଦ-ମନରେ,
"ଉଡ଼ିଗଲେ କାହିଁ ଦୂର ଗଗନରେ
ଲାଭ ଗଲା ମୋର, ଜାଲ ଖଣ୍ଡିକ ଗଲା ରେ ଗଲା ।"

ଆଶାରେ କରିତ ଅନାଇ ରହିଲା ନିର୍ନିମେଷେ
ଦେଖିଲା ଶୂନ୍ୟ ଆକାଶର ଉରେ
ଉଡ଼ିଗଲେ ଚଳ ପକ୍ଷୀ ସୁଦୂରେ ;
ଲୁଚିଗଲେ କାହିଁ ଉତ୍ତରାଶାର ପ୍ରାନ୍ତଦେଶେ ।

ଦୂର ପଥ ଗଲେ ଅତୁଟ ସାହସ ଐକ୍ୟବଳେ
"ଏଇ ଦିଶିଲାଣି ସେଇ ଶାଳ ତରୁ"
ନିର୍ଦ୍ଦେଶ ପାଇ ଊର୍ଦ୍ଧ୍ୱ ପଥରୁ;
ହିରଣ୍ୟକର ବିବର ସଳଖେ ଖସିଲେ ତଳେ ।

"ବନ୍ଧୁ ମୋହର ହିରଣ୍ୟକ ହେ ନାହିଁ କି ଆଜ ?
ନାହଁ କି ତୁମର ଦୁର୍ଗଭିତରେ,
ଶୁଣି ପାରୁନ ତ ବିବରପଥରେ ?"
ପରିଚିତ ସ୍ୱରେ ବାହାରିଲା ଖରେ ମୂଷିକରାଜ ।

"ସ୍ୱାଗତ ବନ୍ଧୁ, ସ୍ୱାଗତ ବନ୍ଧୁ ଚିତ୍ରଗ୍ରୀବ,
ଏ କି ଦଶା ଆଜ ଦେଖୁଛି ତୁମର ?
ବ୍ୟଥିତ କାତର ଚିତ୍ତ ମୋହର,
କହ ଏବେ ଧାନ କିବା ହିତ ଭଲ ସମ୍ପାଦିବ ?"

"କଅଣ ଏବେ ଯେ ପଚ୍ଛୁରୁଚ ଆଜ ବନ୍ଧୁବର ?
ନିର୍ବୋଧତାର ପରିଣାମ ନେଇ
ତୁମରି ନିକଟେ ଆସିଅଛୁଁ ଏଇ
ଜାଲ-ବନ୍ଧନୁ ଅଚିରେ ଆମକୁ ମୁକ୍ତ କର ।"

ଇନ୍ଦୁରରାଜ ଉତ୍ତର କିଛି ନ ଦେଇ ଆଉ
ଯେଉଁ ଡୋରେ ତହିଁ ବନ୍ଧୁ ଜଡ଼ିତ
ଦନ୍ତ ଲଗାଇ କାଟିଲା ତୁରିତ,
କପୋତନାୟକ ଜଣାଇଲା, "ଥାଉ, ମୋଅର ଥାଉ ।"

"କାହିଁକି ଥିବ ଯେ ? ସ୍ୱବ ହେଉ ନାହିଁ ହୃଦସ୍ଥଗତେ ।"
"ଏଇ ମୋର ଜାତି, ଏଇ ମୋର କୁଳ,
ଦେଖୁନାହଁ ଏବେ କେଡ଼େକ ଆକୁଳ,
ଆଗ ଏ ସକଳେ ବନ୍ଧନୁ ଫେଡ଼, ତା ପରେ ମତେ ।"

"ଶକ୍ତି ମୋହର ଅଳ୍ପ ମୁଁ ଏକ କ୍ଷୁଦ୍ର ଜୀବ,
ତୁମେ ତ ଅନେକ, ତୁମେ ମହାବଳ,
ସମାଳିବ କାହୁଁ ଦନ୍ତ ମୋହର,
ସବୁର ପାଶ କି ଛେଦି ପାରିବ ମୁଁ ଚିତ୍ରଗ୍ରୀବ ?

ତୁମେ ମୋର ସଖା, ପ୍ରଥମେ ମୁଁ ତୁମ ମୁକ୍ତି ଲୁଡ଼େଁ,
ନିର୍ଭର କଥା ଦେଉଛ ତା'ପରେ
ଶକ୍ତିମତେ ମୁଁ ସେବିବି ଅପରେ,
ସକଳେ ମୁକ୍ତ ହେଲେ ଭଲ କଥା, ବନ୍ଧୁ ଆହେ ।"

ବନ୍ଧ କପୋତ-ବୃନ୍ଦ ଆକୁଳେ ଟେକିଲେ ସ୍ୱର,
"ଆମ ଜୀବନର କି ଅଛି ମୂଲ୍ୟ,
ଆମ ନାୟକର କିଏ ରେ ତୁଲ୍ୟ ?
କହୁଚୁ ଆମର ନାୟକରେ ଆଗ ମୁକ୍ତ କର ।"

"ଆଗ ଏ ସକଳେ ଉଦ୍ଧାର କର, ମୁକ୍ତ କର,
ପଛକୁ ରହିଲେ ଗଲେ ଯିବ ପ୍ରାଣ
ଜାତି ପାଇଁ ମୋର ହେବ ଅବଦାନ,
କଲଗି ମୁଁ ହେବି ଜୀବନରଙ୍କ ସ୍ୱାର୍ଥପର ?"

ଧନ୍ୟ ହରଷ ଅନ୍ତରେ ଯେବେ ହିରଣ୍ୟକ
କହଇ, "ମୋର ଏ ବାହାର ଛଳନା,
କରୁଥିଲି ତୁମ ଚିତ୍ତ କଳନା,
କପୋତକୁଳର ତୁମେଇ ପାଳକ, ଉଦ୍ଧାରକ ।"

ଇନ୍ଦୁରରାଜ ନିମେଷ ମାତ୍ରର ନ କରି ଡେରି
ଜଣାଇଲା ଯେବେ କରି ଚିତ୍କାର,
ଅଚିରେ ତାହାର ସାଙ୍ଗ ପରିବାର
ନିମେଷ ଭିତରେ ଚୌପାଶେ ଆସି ଗଲେ ରେ ଘେରି ।

ଶାଣିତ ଦଶନେ ଅଚିରେ କାଟିଲେ ସବୁରି ପାଶ,
ସର୍ବାଙ୍ଗଶେଷେ ତହୁଁ ମହାଇନ୍ଦୁର
ବନ୍ଧନ ଛେଦି ପ୍ରିୟ ବନ୍ଧୁର
ଅନ୍ତର ତଳେ ଲଭିଲା ଅତୁଳ ପୁଲକ ହାସ ।

ହିରଣ୍ୟକରେ ଘେରି ଦଳପାକ ହରଷଭରେ
ବୋଇଲେ, "ଧନ୍ୟ ଇନ୍ଦୁରରାଜ
ଜୀବନ ଆମର ଉଧାରିଲ ଆଜ,
ସ୍ମୃତିରେ ଆମର ଅମର ହୋଇଲ ଧରଣୀତଳେ ।"

ତାପରେ ଉଡ଼ିଲେ ଅମ୍ବରପଥେ ଊର୍ଦ୍ଧ୍ୱ ଆଶେ
ରହିଲେ ଅତୁଳ ଶାନ୍ତି-ଶିବିରେ,
ନିତ୍ୟ ସେବିଲେ ଚିତ୍ରଗ୍ରୀବରେ,
"ତୁମେଇ ଆମର ଭରସା ଆମ ଏ ଜୀବନ-ବାସେ ।"

---

ଅଗଷ୍ଣ



୧

ଗୁଳିର ଅଉଆଜ୍, ସେନାର ହୁଙ୍କାର
ଅସିର ଝନ୍ ଝନ୍, ଧନୁର ଟଙ୍କାର,
ମିଳିତ ଆରବରେ ଉଚ୍ଛ୍ୱସି ନଭପାଶ,
ସମର-ପ୍ରାଙ୍ଗଣେ ଉଦ୍ଭୂତ ସନ୍ତ୍ରାସ ।

ରୁଦ୍ର ତାଳେ ତାଳେ
ଜାଗିଛି ଯୁଦ୍ଧ,
ଶଙ୍କା ଦମ୍ଭ ଭାଜି
ଉଭୟ ଦଳ ଆଜି
ମନ୍ତ୍ର ସ୍ତବ୍ଧ ।

୨

ସମର-ପ୍ରାଙ୍ଗଣେ ପ୍ରଳୟ ସମୂହ
ଦୁର୍ଦ୍ଧରତ ସନେ ଦ୍ୱନ୍ଦ୍ୱ ଅମୂଢ ।
ଅଶନି ସମ ନାଦ, ଚଣ୍ଡୁତ ସମ ଶିଖା
ଆସାର ସମ ଭରେ ରକ୍ତ-ବର୍ଷିକା ।

ରୁଦ୍ର ତାଳେ ତାଳେ
ଜାଗିଛ ଯୁଦ୍ଧ,
ଶଙ୍କା ଭୟ ଭଙ୍ଗ
ଉଭୟ ଦଳ ଆଜ
ବିଜୟ-ଲୁବ୍ଧ

୩

ପାହାଡ଼ ସମ ବପୁ, ପାହାଡ ସମ ଗୁଣ
ଦେଖ ସେ ରଣସିଂ ଦେଶର ପାଟ ହାତୀ ।
ହାଉଦା ପରେ ତାର ପତାକା ବର୍ତ୍ତିଳ
ଆକୁଳ ବତାସରେ ହେଉଛ ଉର୍ମିଳ ।

ନଷାଦୀ-ନର୍ଦେଶେ,
ବାରଣ ବ୍ୟଗ୍ରେ
ଉର୍ଦ୍ଧ୍ୱେ କର ତୋଳ
ଉଚ୍ଚେ ସ୍ୱର ତୋଳ
ଚଳଇ ଅଗ୍ରେ ।

୪

ହାଉଦା ପରେ ବର୍ମ ଦେଶର ସରଦାର
ଛତ୍ର ସମ ଶୂଳେ ଶାଣିତ ତଲବାର ।
ଘଡ଼ିକେ ଘଡ଼ି ସେ ତ ଅରାତି-ବକ୍ଷରେ
ଲେଖଇ ଜୟ-ଲେଖ ଅରୁଣ ଅକ୍ଷରେ ।

ନିଷାଦୀ-ନିର୍ଦ୍ଦେଶେ
ବାରଣ ବ୍ୟଗ୍ର
ଊର୍ଦ୍ଧ୍ୱ କର ତୋଳି
ଉଚ୍ଚେ ସ୍ୱର ତୋଳି
ଚଳଇ ଅଗ୍ରେ ।

୫

ଅପର ପକ୍ଷରୁ ଆସିଲା ଶର ଏକ
ନିଷାଦୀ-ଗୁଣ୍ଡି ପରେ ବସିଲା ହେଇ ଦେଖ ।
ବିଜୁଳି-ଝଲକରେ ଚକ୍ଷୁ-ପଲକରେ
ଆରେ କି ଭେଦିଗଲା ସେନାନୀ ବୁକପରେ ।

ତାପରେ ବୃହଁ ବୃହଁ
ସଙ୍ଗେ ମଙ୍ଗେ
ତିନକ ଶୂନ୍ୟ ଶର
ବସିଲା ଖଟାଗର
ବାରଣ-ଅଙ୍ଗେ ।

୬

ଆହତ ରଣସିଂ ଅଟଳ ମେରୁ ଭଳି
ରହିଲା ସେଇଠାରେ, ରହିଲା ସେଇପରି ।
ଯୁଦ୍ଧ-ରୁଧିରରେ ଲିପ୍ତ ପାଦ ତାର
କାଢ଼ିଲା ନାହିଁ ଚହୁଁ ଦୃପ୍ତ ଲଢ଼ୁଆଳ ।

ଆକୁଳେ ଗର୍ଜିଲା
ବଜ୍ରଳ କଣ୍ଠେ,
ଊର୍ଦ୍ଧ୍ୱେ କର ତୋଳି
ଉଚ୍ଚେ ସ୍ୱର ତୋଳି
ଉଗ୍ର ଦର୍ପେ ।

୭

"ନଷାଥୀ ଗଲେ ମୋର, ଟଳିଲେ ସାଥୀ ମୋର
ସାଧନା ମୋର ଏବେ ହେବ ରେ ଅସ୍ତ ଘୋର ।
କାହିଁ ମୁଁ ଯୁଝିବି, ଯିବି ଏ ପାଦ ଟଳି ?
ଏଇଠି ରହିବି ରେ ଏଥର ମୋର ପାଳି ।

ଜାତିର ପତାକା ମୁଁ
ତୋଳିବ ଊର୍ଦ୍ଧ୍ୱେ,
କରିବି ନାହିଁ ନତ,
ଜାତିର ମନୋରଥ
ଆଜ ଏ ଯୁଦ୍ଧେ ।"

୮

ଆଖିର ସମ୍ମୁଖେ ଜାତିର ଧ୍ୱଜା ଦେଖି
ଅତୁଳ ଉତ୍ସାହ ଚିତ୍ତପଟେ ଲେଖି,
ବିପୁଳ ବିକ୍ରମେ ଯୁଝିଲେ ସେନାବଳ,
ଲଭିଲେ ଜୟଶ୍ରୀ ସନ୍ଧ୍ୟା-ଉଜ୍ଜ୍ୱଳ ।

ମୁଗ୍ଧ କରି ନଭେ
ତାରକା ଚନ୍ଦ୍ରେ
ବିଜୟ ଝଙ୍କାର
ବାଜିଲା ବାରବାର
ବିପୁଳ ମନ୍ଦ୍ରେ ।

୯

ବିଜୟୀ ସେନା ଯେବେ ପୁଲକଭରା ବୁକେ
ଫେରିଲେ ସନ୍ଧ୍ୟାରେ ଶିବିର-ଅଭିମୁଖେ ।
ବହୁତ ବୁଝାଇଲେ, ଚେଷ୍ଟା କଲେ ବହୁ
ମାତ୍ର ରଣସିଂ ଫେରିଲା ନାହିଁ ତହୁଁ ।

କଲଲ୍ଲ-ଲଲ ସେଇ
ସମର-କ୍ଷେତ୍ରେ
ରହିଲା ସେଇପରି
ଅଶ୍ରୁ-ବାରି ଧରି
ଆକୁଳ ନେତ୍ରେ ।

ଚଞ୍ଜବନ

୧୦

ଯେମିତି ତିନ ଦିନ ସେମିତି ତିନ ରାତି
ସମର-କ୍ଷେତ୍ରରେ ରହିଲ ପାଠ ହାତି ।
ଆଦେଶ କିଏ ଦେବ ସେଠାରୁ ଯିବା ପାଇଁ ?
ଆଦେଶଦାତା ତାର, ଜାଣୁଚି ଆଜ ନାହିଁ ।

ହାଉଦା ପରେ ତାର
ଉଠୁଚି ନଇଁ,
ଜାତିର ଗୌରବ
ଦେଶର ବୈଭବ
ବୈଜୟନ୍ତୀ ।

୧୧

ବହୁତ ଦୂରେ କାହିଁ ପଚିଶ କୋଶ ଦୂରେ
ନିଷାଦୀ-ସୁତ ଯାଇ ଅଛଇ ନିଜ ପୁରେ ।
ଖେଳଚ ଏହା ସାଥେ ପ୍ରିୟ ସେ ପଟଂଶତ
ଆଦେଶ-ବାଣୀ ତାର ଶୁଣିବ ନିଶ୍ଚିତ ।

ତୁରଗ ସୈନିକ
ଗଲ ରେ ତୂର୍ଣ୍ଣି
ଆଣିଲ ବାଳକରେ
ବାରଣ-ଚାଳକରେ,
ବାସନା ପୂର୍ଣ୍ଣି ।

୧୨

ପୁରତେ ଆସି ଯେବେ ବାଳକ ହେଲା ଛୁଡା
ଭୁଲିଲା ରଣସିଂ ଗୋପନ ମନ-ପୀଡ଼ା ।
ଶୁଣ୍ଡେ ତୋଳି ତାକୁ ପୃଷ୍ଠେ ବସାଇଲା,
ଶିଖର-ଅଭିମୁଖେ ରଚିଲା ଗଡ଼ଲୀଳା ।

ସଫୁଲ ସେନା ହେଲେ
ସାଥିର ସଂଗୀ;
ସକଳ ମହ୍ଲତରେ
କାଟିଲା ଉତ୍ସବରେ
ଷଜପ୍ତ-ସଂଗୀ ।

୧୩

ସଂଗୀ-ଅବସାନେ ଉଠିଲା କଶବର
ସମର-ପ୍ରାଙ୍ଗଣେ ଛୁଟିଲା ଖରନ୍ତର ।
ଭୂଇଁରେ ଲୋଟିଗଲା ଦଣ୍ଡେ ନୋଇଁ ଟିଅା,
ଆକୁଳ ବୃଂହିତେ ଜଣାଇ ଦେଲା ହିଆ—

"ଯେଉଁଠି ମୋର ରଥୀ,
ସାରଥି ସୁପ୍ତ,
ସେଇଠି ନିର୍ଭୀକ
ମୁଁ ଏକ ସୈନିକ
ମରଣ-ତୃପ୍ତ ।"

---




ରାଉତ ଜଣାଇଲା ନୃପତି ପାଶେ
"ଜଣାଣ ଆହେ ମହାରାଜ,
ବୃଦ୍ଧ କରିରାଜ ଶକ୍ତଧର
ପଙ୍କେ ପଡିଅଛି ଆଜ ।

ଆଳାନ-ବନ୍ଧନୁ ମୁକ୍ତ ହୋଇ
ପଳାଇ ଯାଇ ସରୋବରେ
ଆମୋଦେ ଲୋଟୁଥିଲା ପାରୁନ ଉଠି,
ପଡ଼ିଛି ପଙ୍କିଲ ଜଳେ ।

ମାହୁଁତ ଦଳ ନେଇ ଲଗାଇଲେଣି
ଚେଷ୍ଟା କରିଲେଣି ବହୁ,
ଶକ୍ତି ପାଉନାହିଁ ଶକ୍ତିଧର
ଉଠିବା ପାଇଁ ଆଉ ତହୁଁ ।"

"ଶକ୍ତି ପାଉନାହିଁ ଶକ୍ତିଧର !
କି ଥିଲା ତାର ଯଉବନେ,
କି ରଣ ତାଣ୍ଡବ ରଚୁଥିଲା,
ସେ ଯାଉଥିଲା ଯେବେ ରଣେ ।

ଚରଣେ ଦଳୁଥିଲା ଶତ୍ରୁସେନା
ଦନ୍ତେ ଟାଳୁଥିଲା କେତେ,
କରାଳ ଶୁଂଢଣେ ଢଗ୍‌ଢଢଗ
ଥରାଉଥିଲା କେତେମତେ ।

ପୃଷ୍ଠ ଆସନରେ ବସାଇ ମୋତେ
ଚଲସୁଥିଲା କେଉଁପରି,
ହୃଷ୍ଟ ହୃଦୟରେ ବାହୁଡ଼ୁଥିଲା
ଜୈଷ କେତୁ କରେ ଧରି ।

ମାହୁଁତ ଦଳ ଦେଇ ଲଗାଇଲଣି
ଚେଷ୍ଟା କରିଲଣି ବହୁ,
ଶକ୍ତି ପାଉ ନାହିଁ ଶକ୍ତିଧର
ଉଠିବା ପାଇଁ ଆଉ ତହୁଁ !"

ଗମ୍ଭୀର ଉଦ୍‌ବେଗେ ଧରଣୀନାଥ
ବୋଇଲେ ମନ୍ତ୍ରୀରେ ଡାକି
"ଉଦୟ-ସରୋବରରେ ଶଙ୍ଖଧର
ପଙ୍କେ ଯାଇଅଛି ଲାଗି ।

ପଠାଇ ଲୋକଜନ ଉଠାଅ ତାକୁ,
ଉତ୍ତର କରି ନାହିଁ ଲବେ,
ପ୍ରଚୁର ଧାନ ଭାର ଦେଇଛି ଯେଣୁ
ଦେଶର ଲକ୍ଷ୍ମୀ ଗଜରୂପେ ।"

ବିଫଳ ହେଲା ସବୁ ବ୍ୟର୍ଥ ହେଲା
ଚେଷ୍ଟା କରି ବାରମ୍ବାର
ମନ୍ତ୍ରୀ ପଠାଇଲେ ନୃପତି-ପାଖେ
ଶଙ୍ଖଧର-ସମାଚାର ।

ଉତ୍ତର ଜଣାଇଲେ "ହେ ମହାରାଜ,
ଚେଷ୍ଟା କଲୁ ଆମେ ସବୁ,
ବୃଦ୍ଧ ଗଜରାଜ ଶଙ୍ଖଧରେ
ଉଠାଇ ପାରିଲୁନି ପ୍ରଭୁ ।"

ନୃପତି-ଆଦେଶରେ ସେନାପତି ତହୁଁ
ବିପୁଳ ସେନାବଳ ନେଇ
ବୃଦ୍ଧ ବାରଣରେ ଉଠାଇବାକୁ
ଲାଗିଲେ ବଳ କଳ ଦେଇ ।

ଉଠାଇ ପାରିଲେନି, ହତାଶ ବାଣୀ
ସେନାନୀ ଜଣାଇଲେ ଯାଇଁ,
"ବୃଦ୍ଧ ବାରଣରେ ହେ ମହାରାଜ
ଉଠାଇ ପାରିଲୁନି କାହିଁ ।"

ଗମ୍ଭୀର ଅବସାଦେ ଭାଳିଲେ ରାଜା
ଘୋଷଣା କରାଇଲେ ତୁରା,
"କିଏ କି ଉପାୟରେ ଶକ୍ତିଧରେ
ଉଠାଇ ପାରିବ ରେ ଭଲା ।"

ନଗରବାସୀ ଏକ ଶିକାରୀ ଆସି
ସମ୍ମୁଖରେ ଜଣାଇଲା, "ଦେବ,
ବୃଦ୍ଧ ବାରଣରେ ଉଠାଇବାକୁ
ଅଧୀନ ସକ୍ଷମ ହେବ ।"

"ଚେଷ୍ଟା କର ତେବେ", ବୋଇଲେ ରାଜା,
ଶିକାରୀ ଗଲା ଖରତରେ,
ସଦଳବଳେ ତାହା ଦେଖିବା ପାଇଁ
ନୃପତି ଗଲେ ସଗର୍ବରେ ।

ଶିକାରୀ ପିନ୍ଧିଲା ଯୋଦ୍ଧୃବେଶ
ଧରିଲା ଢାଲ ତରବାର,
ଶକ୍ତିଧର-ଆଗେ ମତ୍ତ ଚାଲେ
ନୃତ୍ୟ କଲା ବାରବାର ।

ଶେଷରେ ସଂଗ୍ରାମ-ଶିଙ୍ଗା ଧରି
ଫୁଙ୍କ ପରେ ଦେଇ ଫୁଙ୍କ
ଶକ୍ତିଧର ଆଗେ ହର୍ଷ ଭରି
ଉଚ୍ଚ ସ୍ୱରେ ଦେଲା ଫୁଙ୍କ ।

ଚମକି ଉଠି ଚହୁଁ ଶକ୍ତିଧର
ଗର୍ଜିଁଲା ସାମରିକ ବେଶେ
କର୍ଣ୍ଣପଥେ ଯାଇ ଶିଙ୍ଗା-ନାଦ
ଶୁଣିଲା ଅନ୍ତର-ଦେଶେ ।

ଦୁର୍ବଳତା ଗଲା, ଜଡ଼ତା ଗଲା
ମତ୍ତ ହୋଇ କଳେବର,
ଗହ୍ୱର ପଙ୍କରୁ ଲମ୍ଫ ଦେଇ
ଉଠିଲା ଝରେ ଖରତର ।

ଯୋଦ୍ଧା ପଛେ ପଛେ ହସ୍ତୀଶାଳେ
ପଳସି ଗଲା ଉନ୍ମାଦେ,
ଚକିତ ନରପତି ସଦଳବଳେ
ଫେରିଲେ ଅତି ଆହ୍ଲାଦେ ।

ବଧାଇ ଦେଲାବେଳେ ମୁଗ୍ଧ ରାଜା
ବୋଇଲେ ପୁଲକିତ ବାଣୀ,
"ଯୁଦ୍ଧ କରିବାରେ ଜଗାଇବାର
ସୂତ୍ର ତୁମେ ଥିଲ ଜାଣି ।"

ହସ୍ତ ଯୋଡ଼ି ତାଙ୍କୁ ଶିକାରୀ କହେ,
  "ଭାବିଲି ମୋର ହୃଦୟରେ,
ଚଦୁଟୋଳା ଢଳା ଶାନ୍ତ ନାଗ
  କେବେ କି ଧଣା ଭୋଳ ଜାଗେ ?"

---




୧

ବେଳ ବୁଡ଼ି ନାହିଁ, ଚଉ ଚର ହୋଇ
ବଉଳା ଗାଈ
ଘରମୁହାଁ ହେଲା ଘରେ ତା କଅଁଳା
ବାଛୁରୀ ପାଇଁ ।

ବଣର ସୀମାରେ ଚରୁ ଆଡ଼ୁଆଳେ
ଲେଉଟ ପଥେ
ମହାବଳ ଜଗି ବସିଚି ଦେଖିଲା
ଜମ୍ବୁନାଗଛେ ।

"ତିନ ଦିନ ହେଲା ଭୋକଲା ଅଛି ମୁଁ
ପାଉଚୁ କାହିଁ ?"
ଗରଜନ ଶୁଣି ଭୟେ ଥରହର
ବଉଳା ଗାଈ ।

"ଭିନଭିନ ହେଲ୍ ଆଧାର ମିଳନ,
ଦଇବ ଯୋଗ
ବିନା ଚେଷ୍ଟାରେ ଯୁଟିଅଛୁ ଆଜ
ଅତୁଳ ଭୋଗ ।"

ଥରିଲ୍ ଥରିଲ୍ କଣ୍ଠରେ ତାହାର
ସାହାସ ଧରି
ବଉଳା କହିଲ୍ କାତର କାକୁତି
ମିନତି କରି ।

"ଆଧାର ତୁମର ଯୁଟିଚ ମୁଁ ଆଜ
କରୁନି ମନା,
ମାତର ତୁମଠି ଗୋଟିଏ ଗୁହାରି
କରୁଚ ଜଣା ।

ସାତ ଦିନର ମୋ କଅଁଳା ବାଛୁରି
ରହିଚ ଘରେ !
କ୍ଷୀର ଖାଇବାକୁ ରଡ଼ି ଛାଡ଼ୁଥିବ
ଜଳନ୍ଦଗରେ ।

କଅଁଳା ପିଲ୍ ମୋ ସମାଳିବ କାହୁଁ
ପେଟର ଭୋକ
ଥପୁ ହେବ ସିନା ପିଇଲେ ମୋଅଟୁଁ
ଯୋଡ଼ିଏ ଢୋକ ।

ଚୀରରୁ ମୋହର କ୍ଷୀର ଝର ଝର
ପଡୁଛି ଝରି,
ପିଲା ପାଇଁ ମୋର ସେନେହର ଧାର
ପାରୁନି ଧରି ।

ତିନବାର ମୁହିଁ ସତ୍ୟ କରୁଛି
ହେ ମହାବଳ
ପିଲା ପାଇଁ ମତେ ଦିଅ ଛାଡ଼ି ଦିଅ
ଦୟିମା ମୋର ।"

"ଅଧାର ହୋଇ ତୁ ଦେଖୁଅଛୁ ତୋର
ଖାଦକ ଆଗେ
ଖୋସା କରି ତୁହି କଥା କହି ଜାଣୁ
ଆଛା ବାଗେ ।

ତୋତେ ଛାଡ଼ିଦେବ ? କଅଣ କହୁଚୁ ?"
ଗରଜି ଉଠି
ମହାବଳ ବାଘ ବଉଳା ଆଡ଼କୁ
ଆସିଲା ଛୁଟି ।

ଆକୁଳେ ବୋଇଲା ବଉଳା ସେଲାଗେ
ନୁଆଁଇ ମଥା
"ଜୀବନ ମାଗୁନି, ଅନୁରୋଧ ମୋର
ଗୋଟିଏ କଥା ।

ଘରକୁ ମୁଁ ଯିବ ବାଛୁରୀକ ପେଇ
ନ କର ଡେରି
ତିନିବାର ମୁହଁ ସତ୍ୟ କରୁଚି,
ଆସିବି ଫେରି ।"

ତଳ ଉପରକୁ ମହାବଳ ପିଲା
ଉତ୍ତର କଲା,
"ସତ୍ୟ କରି ତୁ କହୁଅଛୁ ଯେବେ
ଦେଖିବା ଭଲା ।

ଏଇଠି ଆଜ ତୁ ଉତ୍ତର ନ କରି
ଜଲ୍ଦି ଯାଆ,
ଭୋକଲା ପେଟରେ ଏଇଠି ମୁଁ ତୋର
ରୁହିଁଚ ସ୍ୱାଦ ।"

୨

ଜନନୀକ ଦେଖି ଲଞ୍ଜନି ଟେକା
ହଲାଇ ଶିର
କନ କନ ହୋଇ ଭୋକଲା ବାଛୁରୀ
ପିଇଲା କ୍ଷୀର ।

"ପେଟପୂରି କରି ପିଇଥାଆ ଧାନ,
ପିଇଥା ଇଲେ ।"
ବାଛୁରୀକି ଗୃହି ଜନମା କହଇ
ନୟନ-ମାରେ ।

"ଏଇଲେ ଆମେ ରେ ଏକାଠି ଏଇଠି
ରହିବେ ଦୁହେଁ ,
ତୁ ପିଇ ସାରିଲେ ମୁଁ ଫେରିଯିବି
ବାଘର ମୁହେଁ । "

ବାଛୁରୀ ତ କେବେ ବାଘ ଦେଖି ନାହିଁ
ନୟନେ ତାର,
ନାଆଁ ଶୁଣୁ ଶୁଣୁ ମନରେ ମଣିଲା
ଧଡିଛି ଡା କାଳ ।

ମାଆ-ପେଟତଳେ ଲେଟି ଲେଟି ଯାଇ
ଝରିଲା ବୁକେ
ଥନ ଥନ ଆଖି, କନ କନ ଦେହ
ଭ୍ରହିଁଲା ଦୁଖେ ।

ବାଛୁରୀର-ଦେହ ଗୃହ୍ନି ଗୃହ୍ନି ମାଆ
ସେନେହାତୁର
ବାଦର ଚଟେଇ ଫିଟାଇ କହିଲା
ମୂଳରୁ ଚୂଳ ।

ସାତଦିନର ସେ ବାଛୁରି ମାଆର
ବଚନ ଶୁଣି
ବୋଇଲା, "ମାଆଲୋ, ତୋ ସାଥିରେ ଯିବି
ମୁଁ" ଉଚ୍ଛୁଣି ।

ମହାବଳ ଆଗେ ସତ୍ୟ କରି ତୁ
ଆସିଚୁ ମାଆ,
ଦୁହେଁ ମିଶି ଆମେ ପାଳିବା ତୋହର
ସତ୍ୟ ଯାହା ।

ଦୁହେଁ ଯାକ ଆଜ ଆମେ ସେ ବାଘର
ଶିକାର ହେବା,
ବଚନ ନ ଭଙ୍ଗ କରିବା ମାଆଲୋ
ସତ୍ୟ-ସେବା ।"

"ମରିଯାଏ ଧନ- ମରିଯାଏ ଧନ
ମରେ ମୁଁ ଯାଇ,
ତୁଇ ଥାଆ ଧନ ମୋହର ଏ କୁଳ-
ରକ୍ଷା ପାଇଁ ।"

"ନା- ନା ମାଆଲୋ ଏକା ମୁଁ ତ ରହି
ପାରିବି ନାହିଁ,
ଉଚ୍ଛୁର କାହିଁକି ? ବାଘର ମୁହଁକୁ
ଯିବା ଲୋ ଧାଇଁ ।"

୩

ଜନ୍ତୁର ନ ସମ୍ଭ ମନେ ହେଉଥିଲା
ଅନଳ-ରାଗ
ବାଛୁରୀ ସାଥିରେ ବଉଳାକୁ ଦେଖି
ଚକିତ ବାଘ ।

"ଧନ୍ୟ ବଉଳା ଧନ୍ୟ ତୋ ପିଲା
ଧରଣୀତଳେ
ଜିତିଲୁ ମତେ ଲୋ ଜିତିଲୁ ଆଜ ତୁ
ସତ୍ୟବଳେ ।

ହିଂସାର ପ୍ରାଣ ଯେବେ ଯାଉ ଆଜ
ଦୁଃଖ ନାହିଁ,
ପୁଣ୍ୟ ଜୀବନ ରହୁ ଆଜ ତୋର
ସତ୍ୟ ପାଇଁ ।"

ମାଆ ଛୁଆ ଦହେଁ ଘରେ ଫେରି ଯାଅ
ଯାଅ ଲୋ ଫେରି,
ଉପାସରେ ମୋର ଏ ଜୀବନ ଯାଉ,
କାହିଁକି ଡେରି ?"

ମାଆ ଛୁଆ ଦୁହେଁ ଘରକୁ ଫେରିଲେ
ଜୀବନ ନେଇ
ଗାଆଁରୁ ଗାଆଁକୁ ପ୍ରଘଟ ହୋଇଲା
କଥାଣୀ ସେଇ ।

ଅସ୍ତେର

କାଞ୍ଚି ଦେଶରେ କାଞ୍ଚନପୁରେ
ସେଦିନ ଭଲେ
କେତେ ଭୁଲ ହେଲେ ବଉଳା ପାଇଁ ତା
ମୁନିବ ଘରେ ।

ସେଦିନର କଥା ଏତେ କାଳ ଧରି
ଉଠୁଛି ବାଜି
ବଉଳାର ସାଥେ ମହାବଳ ବାଘ
ଅମର ଆଜି ।

---



ଲୁଚ୍ଚି ଲୁଚ୍ଚି ଲୁଚ୍ଚି ବହି ଯାଉଥିଲା
ଆଉସ୍ ନଦୀର ସଲିଳଧାର,
ସଜ-ମୁକୁଳିତ କଇଁଫୁଲ ଫୁଟି
କୂଳ ଦିଶୁଥିଲା ଚମତ୍କାର ।

ନଈ ଧାରେ ଧାରେ କବି କାଉପର୍
ବୁଲି ଯାଉଥିଲେ ବେତସ କରେ
ସାଥେ ସାଥେ ଡେଇଁ ଡେଇଁ ବୁଲି ବୁଲି
ବୋ ଗୁଳିଥିଲା ହରଷାଳରେ ।

ମନ-ଲୋଭନିଆ କମଳା ରଙ୍ଗ—
କଇଁ ଫୁଲଟିଏ ପାଇବା ପାଇଁ
ମନରେ ବହୁତ ଲୋଭାଇଲେ କଙ୍କ
ବେଗ ବଢ଼ାଇଲେ କୂଳକୁ ଯାଇ ।

ବହୁତ ଯତନ କଲେ କେତେମତେ
ପାଇବାକୁ ତହୁଁ କୁସୁମଟିଏ
ଥକ ଯାଇ ଶେଷେ ବିରତ ହୋଇଲେ
"ନାହିଁ ହେବ ନାହିଁ, ପାରୁଚ କିଏ ?"

ଆଗକୁ ଆଗକୁ ଆଗେଇ ଚାଲିଲେ
ହେବ କି ପଚିଶ ତିରିଶ ହାତ
ପଛକୁ ଚାହିଁଲେ ହଠାତ୍ ଶୁଣି ସେ
ଜଳରେ କାହାର ଲମ୍ଫଡାଉ ।

ଛୁଡ଼ା ହୋଇ କଙ୍କ ସହସା ଆଖିରେ
ଅନାଇ ରହିଲେ, ହେଲାନ ଡେରି,
କଇଁଫୁଲ ନାଡ଼ ମୁଖରେ ଓଟାରି
ବୋ ସେଇଲାଗେ ଆସିଲା ଫେରି ।

ଦୁର୍ଲଭ ତାର ସେଇ ଉପହାର
ସଁପି ଦେଲା ତହିଁ ଚରଣତଳେ,
କୁସୁମଟି ଦେଖି ମୁଗ୍ଧ ମୁନିବ
ଆଉଁସିଲେ ତାକୁ ସେନହଭରେ ।

ବୋ।

“ଜାଣି ନେଲ୍ ଯାହା ଲୋଡ଼ୁଥିଲ ମୁହିଁ
ଆଣି ଦେଲ୍ ତୋର ସାଧମତେ,
ମୋର ଉପହାର ତୋହର ନାଆଁ ରେ
କଷଢାଟିଏ ରେ ଦେବ ମୁଁ ତତେ ।”

---

ଢେସ୍ତର




୧

କାଶୀ ରାଜ୍ୟର ସାନ୍ଦ୍ର ଗହନ ବନଭାଗେ
ଶାଳ ତରୁଟିରେ ଶୁଆଟିଏ ରହ୍ବ ଅନୁରାଗେ
ଶାନ୍ତିର ଧନ
ସୁଖର ସପନ
ନିତି ଦେଖୁଥିଲା ଆଖି ଆଗେ ।

ଚଉସ୍ତର

୨

ବନକର ତହିଁ ଲୁବ୍ଧକ କରେ ଧନୁ ଧରି
ପଳାୟିତ ଏକ ସନ୍ତ୍ରସ୍ତ ହରିଣ ଅନୁସରି
ବିଷ-ଜର୍ଜର
ଖର ଏକ ଶର
ଛାଡ଼ି ଦେଲା କାଳ ନାଗ ପରି ।

୩

ଲକ୍ଷ୍ୟ ହରାଇ ଶରଟି ଇଆଡ଼େ ଲାଗି ଯାଇଁ
ବିଷର ଦହନେ ମରିଗଲା ତରୁ ଗୁହୁଁ ଗୁହୁଁ,
ଉଡ଼ିଗଲା ତାର
କିଶ୍ଳୟସମ୍ଭାର,
ଶୁଖିଗଲା ତାର ସବୁ ବାହୁ ।

୪

ଦୁଃଖେ ଶୁଆଟି ଛୁଇଁଲା ନ ଆଉ ପାନାହାର,
କାତର କୂଜନେ ଢାଳିଲା ବୁକୁର ହାହାକାର ;
ଡାଳରୁ ମୂଳକୁ
ମୂଳରୁ ଡାଳକୁ
ଘୂରି ହେଲା ଖାଲି ବାରବାର ।

୫

ଆଉ ବନକର ପାନ୍ଥ ସେ ଏକ ପରବାସୀ
ପଥେ ଯାଉଁ ଯାଉଁ ଛିଡ଼ା ହୋଇଗଲେ ତହିଁ ଆସି ;
"ଅବୋଧ ଶୁଆ ରେ
ଶୂନ୍ୟ ଦୁଆରେ,
କହ ତୁହି କେଉଁ ସୁଖ-ଆଶୀ ?

୬

ଶୁଷ୍କ ହେଲଣି ପ୍ରିୟତମ ତୋର ଏଇ ଶାଳ,
ପତ୍ର-ବିହୀନ ହେଲଣି ରେ ପୁଣି ସବୁ ଡାଳ ;
ଗୃହ ଯାଉ ନାହିଁ,
କ ଭାବୁଚୁ ଆଉ ?
ଶକ୍ତି ନାହିଁ କି ଉଡ଼ିବାର ?"

୭

"ଉଡ଼ିଯିବା ପାଇଁ ଶକ୍ତି ଅଛି ମୋ ପକ୍ଷରେ,
କାହିଁ ଉଡ଼ିଯିବ ଜୀବନର କେଉଁ ଲକ୍ଷ୍ୟରେ ?
ମୋର ଏଇ ବାସ
ହେଲା ଯେବେ ନାଶ
କାହ ଯିବ କେଉଁ କକ୍ଷରେ ?

୮

ବିପଦ ପଡ଼ିଲା ବୋଲି ଆଜି ଏଇ ତରୁବାସେ
କେଉଁପରି ଆଜି ଉଡ଼ିଯିବ ଭଲି କେଉଁ ଆଶେ ?
ଆନ ପୁର ପାଇଁ
ହେବ କ ଆଶାୟୀ ?
ଗଲେ ଯାଉ ପ୍ରାଣ ଉପବାସେ ।"

୯

ରୂପ ବଦଳାଇ ପାନ୍ଥ କହେ, "ମୁଁ ଦେବଦୂତ,
ଅଭିଭୂତ ଆଜି ଦେଖି ତୋର ଭାବ ଅଦଭୁତ ।
ତୋର ଏ ତରୁରେ
ଦୁଗ୍‌ଧ ମରୁରେ
ସିଞ୍ଚି ଦେଉଚି ଅମୃତ ।"

୧୦

ଜୀବନ ପାଇଲା ଶାଳଚରୁ ଆଖି-ପଲକରେ
ପତ୍ର କୁସୁମ ଫଳେ ଭରି ଦେଲା ପୁଲକରେ ;
ଶୁଆଟି ଦେଖିଲା
ଅଦଭୂତ ଲୀଳା
ଜୀବନର ସେଇ ଝଲକରେ ।

---




୧

"ଗଗନବୁଷା ବଳାକା ଆରେ
ମୋ ଆଡ଼େ ଟିକେ ଚାହଁ,
ଦଣ୍ଡେ ରହି ଏ ମୋର ଦଶା
ନୟନେ ଦେଖି ଯାଅ ।

ଲୁଣ୍ଠି ନେଇ ପୁଞ୍ଜି ମୋର
କି କରେ ଏଇ ଦସ୍ୟୁଦଳ !

ତୁମରି ଛନା ମୋହର ଆଜ
ସାକ୍ଷୀ କେହି ନାହିଁ,
ଜଗତ ଆଗେ ମୋ ଲଗି ପଟଡ
କହିବ ଭଲ ଯାଇ ।

ପୂର୍ବ ମୁଖେ ଯାଉଚ ତୁମେ
ବଳାକାଦଳ ଆରେ,
କରୁଣ ମୋର ମିନତି ଏବେ
ଶୁଣ ରେ ଶୁଣ ବାରେ ।

ମୋହର ଲାଗି ଜାଣୁଚ ସତ
ବନ୍ଦ ହେବ ତୁମର ପଥ ,

ତଥାପି ତୁମେ ନଗର ଆଡେ
ଯିବ ରେ ମୋହ ବାସେ,
କହିବ ମୋର କରୁଣ ଗାଥା
ନଗର-ଜନ-ପାଶେ ।

ଜୀବନ ମୋର ରହିବ ନାହିଁ
ହେଲଣି ଆକ୍ରାନ୍ତ,
ମରଣ-ପଥ-ଯାତ୍ରୀ ମୁହିଁ
ନିଃଶେଷ ମୁଁ ପାନ୍ଥ ।"

ଗ୍ରୀସ୍‌ର କବି ଆଇବିକସ
ପ୍ରାଣରୁ ଦେଇ କରୁଣ ରସ

ଊର୍ଦ୍ଧ୍ୱମୁଖେ ଦୃଷ୍ଟି ତୋଳି
ଡାକିଲେ ଆକୁଳତା,
"ଯିବ ରେ ଯିବ ବଳାକା ତୁମେ
କହିବ ମୋର କଥା ।"

"ନିର୍ବୋଧ ରେ, ପକ୍ଷୀ ଆଗେ
 କରୁଥା ତୋର ଅଳି ।"
ଚଳିଲେ ତହୁଁ ଦସ୍ୟୁଦଳ
 ଅପଣା ପଥ ଧରି ।

ତଳକୁ ଖସି ବଳାକାଦଳ
ଘୂରିଲେ ତୋଳି କରୁଣ କଳ,

ଆହତ କବି ଅଶ୍ରୁଜଳେ
 ଢାଳିଲେ ଆକୁଳତା
"ପ୍ରିୟ ରେ ତୁମେ ବଳାକାଦଳ
 କହିବ ମୋର କଥା ।"

୨

ରାଜଧାନୀର ସାନ୍ଧ୍ୟ ପଥ
 ହୋଇଛି ଆଲୋକିତ,
କବିର ନବ ନାଟ୍ୟ ଏକ
 ହେଉଛି ଅଭିନୀତ ।

ମୁଗ୍ଧ ପ୍ରାଣେ ଜନତା ରହି
ନୃତ୍ୟ ଗୀତ ଦେଖୁଛି ଚାହିଁ;

ସହସା ତେବେ ଊର୍ଦ୍ଧ୍ୱପଥୁଁ
 ପଡ଼ିଲା କାର ଗୁଳି ?
କାହାର କଳ କାକଳି ସ୍ୱନ
 ଭଟିଲା ଚଞ୍ଚବାହି ?

କ୍ଷିପ୍ତମନା ଜନତା ତହୁଁ
ଦେଖିଲେ ଚଞ୍ଚଳ,
ଊର୍ଦ୍ଧ୍ୱଭାଗେ ଘୂରଇ ଆସି
ବଳାକା ଏକ ଦଳ ।

କରୁଣତର କଣ୍ଠସ୍ୱର
ଉଚ୍ଛୁଳପଡ଼େ ଥରକୁ ଥର,

ଅକାଳ ବାଧା ବିଘ୍ନ ଦେଖି
କ୍ଷୁବ୍‌ଧ ହେଲେ ଲୋକେ,
"ଆଣ ରେ ଆଣ, ମାର ରେ ବାଣ"
ଗରଜ ହେଲେ ଥୋକେ ।

ବିଚାରଶୀଳ କିଏ ସେ ତହିଁ
କହିଲା, "ଅସ୍ତ୍ର ଧର,
ପକ୍ଷୀ କିପାଁ ଘୂରିଲେ ଆସି
ବିଚାର ଠିକେ କର ।"

"ବିଚାର ତବ ଥାଉ ରେ ଥାଉ
ଏ ସୁଖ କାହିଁ ମିଳିବ ଆଉ ?"

କିଏ ସେ କହେ "ଛାଡ଼ ଏ ସୁଖ,
ଏ ସୁଖ ଏବେ ଛାଡ଼,
କି ଅବା ଏବେ ଘଟୁଛି ଦେଖ
ବୁଝ ଏ ସମାଚାର ।"

କୋଣାର୍କ

ସପ୍ତ ଏକ ଦେଖଣାହାରି
କହିଲା "ଆରେ ଭାଇ,
ଇଏ ତ ସେଇ ବଳାକାଦଳ
ଆସିଲେ ତାହାପାଇଁ ।"

ସଙ୍ଗୀ ତାର ପାର୍ଶ୍ୱଗତ
କହିଲା, "ଏବେ ସତ ରେ ସତ ।"

ଆରେକ କିଏ କହିଲା; "ଆରେ
ରକ୍ଷା ଆଉ ନାହିଁ,
ଇଏ ତ ସେଇ ବଳାକାଦଳ
ଆସିଲେ ତାହା ପାଇଁ ।"

ପାଖର ଶ୍ରୋତା କହିଲା, "ତୁମେ
କିଏ ରେ ସଇତାନ,
କଥାରୁ ତୁମ ପଡ଼ୁଚି ଜଣା
ସକଳ ତୁମେ ଜାଣ ।"

ଜନତା ଆଉ ନ କର ଡେର
ସେଇଠି ଆସି ଗଲେ ରେ ଘେର,

ପ୍ରଶ୍ନ ପରେ ପ୍ରଶ୍ନ ହେଲା
ପ୍ରହାର ହେଲା ବହୁ,
ନମେଷକରେ ସତ୍ୟ କଥା
ବାହାର ହେଲା ତହୁଁ

"କି କଲେ ଘୋର ଦସ୍ୟୁଦଳ
କି କଲେ ଆତତାୟୀ,
ଦୁର୍ଲଭ ଏ ଜୀବନ ନେଲେ
କି ଛାର ଧନ ପାଇଁ ।"

କହେ ସେ ଚୋଳେ ଉଚ୍ଚ ସ୍ୱର,
"ଦସ୍ୟୁଦଳେ ହତ୍ୟା କର ।

ତେବେ ରେ ଯାଇ ଦେଶରେ ହେବ
ସକଳ ମନବୋଧ,
ତେବେ ରେ ଯାଇ ଦେଶରେ ହେବ
ପାପର ପ୍ରତିଶୋଧ ।"

ବନ୍ଦୀ ହେଲେ ଦସ୍ୟୁଦଳ
ସୁଧୀର କହେ ହସେ,
"ଶୃଙ୍ଖଳ ରେ ଶୃଙ୍ଖଳ ଦେଖାଅ ପଥ
ଶୃଙ୍ଖଳ ରେ କଣ୍ଠ-ପାଶେ ।"

"ତାହାଇଁ ହେଉ, ତାହାଇଁ ହେଉ"
ଚୋଳିଲେ ଜନ ମତ୍ତ ହେଉ ।

ଆନନ୍ଦର କାକଳି ରବେ
ଗଗନ ପଥ ପୂରି
ଘୂର୍ଣ୍ଣାୟିତ ବଳାକାଦଳ
ଅଚିରେ ଗଲେ ଉଡ଼ି ।

ଜେସ୍ନାଅଣୀ

୩

ନଗର-ପଥେ କବିରେ ଘେନି
ଚାଲିଲା ପଟୁଆର,
ନଗର-ଜନ ଜୟ-ଧ୍ୱନି
ତୋଳିଲେ ବାରବାର ।

କୁସୁମ ରାଶି ବର୍ଷିଲେ,
ସୁବାସ ଜଳ ସିଞ୍ଚିଲେ,

ସମାଧିଭୂମେ ହୋଇଲେ ଠୁଳ
ଯାତ୍ରୀ ଅଗଣିତ,
ସମାଧିଭୂମେ ଉଚ୍ଚ ତାନେ
ତୋଳିଲେ ଜୟଗୀତ ।

"ଆମର ଏଇ ଗ୍ରୀସ୍‌ର ତୁମେ
ମହାନ୍ ଗଉରବ,
ନିଖିଳ ପ୍ରାଣେ ଝଙ୍କାରିତ
କାବ୍ୟଗୀତ ତବ ।

ଯାଅ ହେ କବି ଆଇବିକସ
ଅମର ତୁମ ଅମଳ ଯଶ,

ହନ୍ତାରକ ଦସ୍ୟୁ ଦଳ
ଦଣ୍ଡ ପାଇଲେଣି ;
ସ୍ୱର୍ଗେ କବି ତୃପ୍ତ ହୁଅ
ଶାନ୍ତ ସୁଖ ଘେନି ।"

ସହସା ସେଇ ବଳାକାଦଳ
ଆସିଲେ ପୁଣି କାହୁଁ,
ଉପରେ ଉଡ଼ି କାକଳି-ରୋଳ
ତୋଳିଲେ ଝୁହୁଁ ଝୁହୁଁ ।

ଉଚ୍ଚକିତ ନଗରଜନେ
ତଥ୍ୟ ବୁଝି ପାରିଲେ ମନେ,

ବୋଇଲେ, "ଆରେ ବଳାକା ତୁମେ,
ଅବିସ୍ମରଣୀୟ,
କବର ଲାଗି ଆମର ଆଜ
କୃତଜ୍ଞତା ନିଅ ।"

---




"ହଳଦିଘାଟର ସଂଗ୍ରାମପଥେ
ସରିନି ରକତ-ହୋରି-ଖେଳ
ବରବାଜି ମୋର ଚୈତକ କହ,
ବିଦାୟର ତୋର ଏ କି ବେଳ ?

ଶତ୍ରୁ ଆଗରୁ ଶ୍ରାନ୍ତ ପ୍ରଭୁରେ
ଏଇ ନଈକୂଳେ ନେଇ ଆସି
ବରବପୁ ତୋର ଚକ୍ଷୁ-ପଲକେ
ଏଇ ଧୈକଟେ ଢେଲୁ ଝାସି ।

ଛତ୍ରାଅଣି

ବନ୍ଧୁ ମୋହର, ସେବକ ମୋହର,
ବରବାଜି ମୋର ଚୈତକ
ଲୋତକ-ଅର୍ଘ୍ୟ ଦେଉଛି ତୋଲାଗି
ଘାଣ୍ଟି ହୁଆର ସନ୍ତକ ।

କେତେ ସଂଗ୍ରାମେ ବୀର ହବନେ
ଲଢ଼ିଅଛୁ ତୁହି ଅକାତରେ,
କେତେ ଯେ ଆଘାତ ବହି ନେଇଅଛୁ
ବଜ୍ର-କଠିନ କଳେବରେ ।

କେତେ ଶତ୍ରୁରେ ଖେଦିଅଛୁ ତୁହି,
କୁଦିଅଛୁ ପୁଣି ବୁକେ ଛାର,
ଘୋର ସଙ୍କଟେ ଜପୁଣିଷି ତୁହି
ଦେଇଅଛୁ ମତେ ବାରବାର ।

ମତେ ଘେନ ପୁଣି ଧୂରିଅଛୁ କାହିଁ
କେତେ ଦୁର୍ଗମ ପନ୍ଥାରେ,
ଏଇ ଆରାବଲୀ ଗିରିସଙ୍କଟେ
କେତେ ଘନ ବନ କାନ୍ତାରେ ।

ଦୁର୍ଦିନେ ମୋର ଦୁଃଖରେ ତୁହି
ଛୁଇଁନାହୁଁ ତୋର ପାନାହାର,
ଢାଳିଅଛୁ କେତେ ନୟନର ଧାର,
ଆଜ ଢାଳିଦେଲୁ ପ୍ରାଣଧାର ।

ବନ୍ଧୁ ମୋହର, ସେବକ ମୋହର
ବରବାଜ ମୋର ଚୈତକ,
ଲୋତକ-ଅର୍ଘ୍ୟ ଦେଉଛି ତୋ ଲାଗି
ପାର୍ଣ୍ଣ ହିଆର ସନ୍ତକ ।

କାହା ଅଶ୍ୱର ଟାପୁ ଶବଦ ଏ
ନିକଟ ହେଉଛି ବେଳୁଁ ବେଳ,
ଧୂଳିର କୁହେଳି ପାଖେଇ ଆସୁଛି
ଉଦ୍‌ବେଳ ଏଇ ଉଦ୍‌ବେଳ ।

କିଏ ସେ ମତେ ରେ ଗୋଡ଼ାଇ ଅଛୁ କି ?
କିଏ ସେ ଆସୁଛି ସଓ୍ୱାର,
ଏତିକି ବେଳକୁ ତୁ ତ ନାହୁଁ ଆଉ
ଉଠେ ମୁଁ, ଧରେ ମୁଁ ତଲୁଆର ।

କିଏ ସଓ୍ୱାର କିଏ ରେ ଆସୁଛି
ଇଏ ତ, ଇଏ ତ ଶକ୍ତ !
ଶିଶୋଦୀୟ-କୁଳ-ପାଂଶୁଳ ଇଏ
ମୋଗଲପତିର ଭକ୍ତ ।

ଧମନୀର ଧାଉ ଶେଷଥର ପାଇଁ
ହେଉ ଥରେ ଆଜ ମତୁଆଳ,
ଏତିକି ବେଳକୁ ତୁ ତ ନାହୁଁ ଆଜ
ଭଲ କରି ଧରେ ତଲୁଆର ।"

୨

"କ୍ଷମା ଦିଅ ଦେବ କ୍ଷମା ଦିଅ ଆଜ
ପାଦ-ଧୂଳି ଦିଅ ଶିରେ ମୋର,
ଶିଶୋଦିୟ କୁଳ-ପାଂଶୁଳ ମୁହିଁ
କରିଅଛି ପାପ ଅତି ଘୋର ।

ଭ୍ରାତୃଦ୍ରୋହୀ ମୁଁ, ଦେଶଦ୍ରୋହୀ ମୁଁ
ଜାତିଦ୍ରୋହୀ ମୁଁ ଧରାତଳେ,
ମୋର ପାଇଁ ଦେବ କ୍ଷମା ନାହିଁ କାହିଁ
କ୍ଷମା ନାହିଁ କାହିଁ କେଉଁକାଳେ ।

ଦୁଇ ଖୋରସାନ ସୈନିକ, ଦେବ
ଛୁଟିଥିଲେ ତୁମ ପଛେ ପଛେ
ଏଇଲାଗେ ବଧି ଥା'ନ୍ତେ ତୁମକୁ,
ଅସହାୟ ଦେଖି ଏଇ ପଥେ ।

ନୟନରେ ତାହା ଦେଖି ପାରିଲି ନ,
ଅଶ୍ୱ ମୋହର ଛୁଟାଇଲି,
ବିଦ୍ୟୁତ ବେଗେ ଏଇ କରବାଳେ
ଦୁଇମଥା ତଳେ ଲୋଟାଇଲି ।

ଆସିଛି ମୁଁ ଆଜ ଫେରି ଆସିଅଛି
ତୁମରି ଚରଣ ଲକ୍ଷ୍ୟରେ,
ଅନୁତପ୍ତ ଏ ଅନୁଜକୁ ଦେବ,
ଥାନ ଦିଅ ପୁଣି ବକ୍ଷରେ ।"

"ଛଳନାର ବେଳ ନୁହଇ ଏବେ ରେ
ଅସହାୟ ମୁହିଁ ଅସହାୟ,
ଚୈତକ ମୋର ଖସି ଗଲାଣି ରେ
କଣ ଦେଇ ମତେ ନିରୁପାୟ ।

ଶତ୍ରୁ-ଶିବିରେ ଧାଇନେବା ପାଇଁ
ଭାବଚ୍ କି ତୋର ଅନ୍ତରେ ?
ଲକ୍ଷ୍ମୀ ତ ଆଜ୍ କର ନାହିଁ ମତେ
ଏତେଟକଳେ ଆଜ ଶକ୍ତ ରେ ।

ନେ' ଏଇ ନେ' କରବାଳ ମୋର
ନିଃଶେଷ ଏବେ କର ମତେ,
ଯବନର ହାତେ ଜୀବନ ମୋହର
ନ ସାଜ୍ ରେ ଆଜ ଏଇ ପଥେ ।"

"ଶୁଣାଉଚ ଏ କି ଶୁଣାଉଚ ଦେବ
ଏ କି ନିଷ୍ଠୁର ଉପହାସ ?
ଅନ୍ତରେ ତବ ଢେନାଲ ନାହିଁ ତ
ଜଣାଇଲ ଏ ଯେ ଇତିହାସ ?

ଭ୍ରାତୃଦ୍ରୋହୀର ଦଣ୍ଡ ହେ ଦେବ
ଦିଅ ତେବେ ଦିଅ ଏଇଠାରେ,
ଦେଶଦ୍ରୋହୀର ଶିର ଢାଳି ଦିଅ
ଉଦ୍ୟତ ତବ କରବାଳେ ।"

"ସତ୍ୟ କି ତେବେ ସତ୍ୟ କି ସତେ
ଫେରି ଆସିଅଛୁ ମୋର ପାଶେ ?
ଭ୍ରାନ୍ତ ପଥିକ ସଂତ କି ରେ ଆଜି
ବାହୁଡ଼ି ଆସିଚୁ ତୋର ବାସେ ?

ସ୍ୱପ୍ନ ନୁହଇ ସତ୍ୟ କି ସତେ
ଆ' ତେବେ ଆ' ଶକ୍ତ ରେ,
ଲେଟି ପଡ଼ି ଥରେ ଲେଟି ପଡ଼ି ଆସି
ଦଗ୍ଧ ଏ ମୋର ଅନ୍ତରେ ।"

"ପୁଣ୍ୟ ଏବେ ମୋ ଧନ୍ୟ ଜୀବନ
ଅମର ହେ ତବ ସ୍ପର୍ଶେ,
ନବ ଜୀବନର ଉତ୍ସ ପାଇଲି
ଅକୂଳ ମରୁର ଧ୍ୱଂସେ ।"

"ମାଡ଼ି ଆସୁ ଝଡ଼ ଝଞ୍ଜାର ଦାଉ
ଘୋଟି ଆସୁ ଘୋର ଦୁର୍ଦ୍ଦିନ,
ତୋତେ ପାଇ ଆଜି ଅଗ୍ରଜ ମୁହିଁ
ସଂଶୟହୀନ, ଭୟହୀନ ।

ସୌଭ୍ରାତ୍ରର ନିର୍ମଳ ଲୁହେ
ଅନ୍ତର ଆଜି ବିଧଉତ,
ଜଗତର ତଳେ ପ୍ରତାପ ସିଂହ
ସମରଜୟୀ ମୁଁ ଅଦଭୁତ ।"

୩

"ଜାଗ ଜାଗ ଆଜ ସୈନିକ ମୋର
ମହାନିଦ୍ରାର ମୋହ ତେଜି,
ଜାଗି ଉଠ ମୋର ସୈନିକ ବୀର
ଭାବୀ ସଂଗ୍ରାମ ମନେ ହେଜି ।

ହଳଦିଘାଟର ସଂଗ୍ରାମ ଭୂମେ
ଜଳଦି ହେବ ସେ ହୋରିଖେଳ
ଉଠ, ଜାଗିଉଠ ସୈନିକ ମୋର
ବିଦାୟର ତୋର ଏ କି ବେଳ ?"

---




୧

"ଛାଡ଼ ଦିଅ ହେ ରାଜା
ଛାଡ଼ ଦିଅ ହେ ମତେ,
ମୁହିଁ ନଗଣ୍ୟ ଜୀବ
ଯାଏ ମୋହର ପଥେ ।

ତୁମେ ବିଜୟୀ ବୀର
ମଣି-- ମୁକୁଟ-ଶିର,

ସାନ ଜୀବନ ନେଇ
କିବା ଲଭିବ ସତେ ?
ଛାଡ଼ ଦିଅ ହେ ରାଜା
ଛାଡ଼ ଦିଅ ହେ ମତେ ।

ଛେଦ୍ୟାନବେ

ଖାଇ ପଦ୍ମ-ନାଡ଼
ଖାଇ ପଦ୍ମ-ଫଳ
ପିଇ ସରସୀ-ଜଳ
ପିଇ ସରିତ-ଜଳ

ଚିର ତାପସ ସମ
ବାନ୍ଧେ ଜୀବନ ମମ ।

ମୋର ଜୀବନ ନେଇ
କବା ଲଭିବ ସତେ !
ଛାଡ଼ି ଦିଅ ହେ ରାଜା
ଛାଡ଼ି ଦିଅ ହେ ମତେ ।

ଘରେ ଅଛଇ ମୋର
ଅନ୍ଧ ଜରଣ୍ଣ ମାତା
ତାର ଆଶ୍ରା ମୁହିଁ
ତାର ଆଧାରଦାତା ।

ସାରା ଜଗତେ ମୁଁ ତ
ତାର ଏକଇ ସୁତ ।

ତୋଳା-ପ୍ରତିମା ମୁହିଁ
ତାର ନୟନଗତେ
ଛାଡ଼ି ଦିଅ ହେ ରାଜା
ଛାଡ଼ି ଦିଅ ହେ ମତେ ।

ପ୍ରିୟା ବରଷା ମୋର
ପତି-ସୁହାଗୀ ସଖୀ,
ନବ ପ୍ରସୂତି ହୋଇ
ଏବେ ଅବଳା ଅଛି ।

ମୃଦୁ ମୃଣାଳ ମୁଖେ
ପ୍ରୀତି-ଆକୁଳ ବୁକେ,

କେତେ ଅନାଇଥିବ
ସତେ ମୋହର ପଥେ
ଛାଡ଼ି ଦିଅ ହେ ରାଜା
ଛାଡ଼ି ଦିଅ ହେ ମତେ ।

ଏଥି ହୋଇଲେ ଶେଷ
ମୋର ବାରତା ପାଇ
ପ୍ରାଣ-ପ୍ରତିମା ମୋର
ପ୍ରାଣ ରଖିବ ନାହିଁ ।

ସିଏ ପଡ଼ିଲେ ଟଳି
ଶିଶୁ ପଡ଼ିବେ ଢଳି,

ଭାବ ସଦୟ ହୋଇ
ତବ ହୃଦୟଗତେ,
ଛାଡ଼ି ଦିଅ ହେ ରାଜା
ଛାଡ଼ି ଦିଅ ହେ ମତେ ।"

କରୁଣ ବାଣୀ ଶୁଣି
ମରମ ପୁଟେ ପୁଣି
ବୋଇଲେ ନଳ ନରନାଥ,
"ମୁକ୍ତ ତୁହି ଏବେ
ହଂସ ଯାଅ ତେବେ
ଆପଣା ପଥେ ଉଡ଼ି ଯାଅ।"

୨

"ଫେରି ମୁଁ ଆସିଲି ରାଜା ହେ
ତୁମର ଚରଣ-ପଦ୍ମେ,
ଯାଇ ନ ପାରିଲି ଆଉ ମୁଁ
ଆକୁଳ ମୋହର ସଦ୍ମେ।

ବସୁଛି ମୋର ଚିତ୍ତେ
ତୁମର ପାଇଁକି କଳ୍ପିତ,
କରି ପାରିବି କି ରାଜା ହେ
ତୁମର ମନର ବାଞ୍ଛିତ ?

ଅକିଞ୍ଚନ ମୁଁ ଜୀବନେ
ଧରିଅଛୁ ବହୁ ରାଜ୍ୟ
କେତେ ଦକଳ-ସର-ଉରସେ
ବଳସିତ ଆହେ ଆର୍ଯ୍ୟ।

କେଳି-ସର-ସ୍ନାନ ନିରତା
କେତେ ସୁନ୍ଦରୀ ଦେଖିଚ;
ସ୍ମରଣର ପଥେ ରାଜା ହେ,
ଭଲ କରି ଲେଖି ରଖିଚ ।

କୁଣ୍ଡିନ ପୁରେ ଦେଖିଚ
ତୁମ ଲାଗି ରାଜକନ୍ୟା,
ସ୍ବରୁ ଉତ୍ପଳବର୍ଣ୍ଣା
ରୂପ-ଗଉରବ-ଧନ୍ୟା ।

ତରୁଣୀ ନୂତନବୟସୀ
ନାମ ତାର ଦମୟନ୍ତୀ,
ବିପଞ୍ଚୀ-କଳ-ଭାଷିଣୀ
ଗୁଣମୟୀ, ଯଶୋବନ୍ତୀ ।

ନିଷଧ- ନଅର ଯୋଗ୍ୟ
ସେଇ ଯେ ଅତୁଳ ରତ୍ନ,
ତୁମରି ପାଇଁକି ରାଜା ହେ
କରିବ କି ବାରେ ଯତ୍ନ ?”

ନୃପତି ଭାଷିଲେ, “ବିହଗବର
ଢାଳିଲୁ ଇଏ କି ପୀୟୂଷ-ଝର ?
ସତେ କି ଯିବୁ ରେ ମୋହରି ପାଇଁ ?
କାହୁଡ଼ା ପଥ ତୋ ରହିଲ ସ୍ବର୍ଣ୍ଣି ।”

ସତାନକେ

୩

"ରାଜଜେମା ଆଗୋ ଶୁଣିବ କି
ଶୁଣିବ କି ମୋର କଥା ପଦେ ?
ତୁମ ପାଇଁ ଏକ ସମାଚାର
ଆଣିଅଛି ଆଜ ତୁମ ପଦେ ।

ରାଗିବ ନି ଆଗୋ ଜେମାମଣି
ରାଗିବ ନି ଆଜ ମୋହ ପରେ
ସେଇ କଥା ମୁହିଁ ବାଢ଼ୁଅଛି
ରୁଚଇ ଯା ତୁମ ଅନ୍ତରେ ।

ଶୁଣିଥିବ ତୁମେ ରସମୟି,
ଶୁଣିଥିବ ରାଜା ନଳ ନାମ,
କୀର୍ତ୍ତି ଯାହାର ଦେଶଭରା
ରୂପ ଗୁଣ ଯା'ର ଅଭିରାମ ।

ତୁମ ରୂପ-ଗୁଣ-ଜୟଗାଥା
ଶୁଣି ହୁଏ ରାଜା ଝୁରା ନିଶି,
ସ୍ୱପ୍ନର ନୟନେ ତୁମ ଛବି
ଦେଖଇ ନିତ୍ୟ ଦିଶି ଦିଶି ।

କୁସୁମ-ଅର୍ଘ୍ୟ ଡାଳି ଡାଳି
ଭରା ନିଶୀଥିମା ଜାଗି ଜାଗି
ମନମଥ-ପୂଜା ବାଢ଼ୁଅଛି
କାହା ଲଗି ଜେମା, କାହାଲଗି ?

ସତ କର କୁହ ଶୋଭାମୟି,
ସତ କର କୁହ ମନ ଖୋଲି,
ତୁମ କାମନାର ଧନ କିଏ ?
ମୁଁ ଭାବୁଚ ସେଇ ନଳ ବୋଲି ।

ଧାଗ ନାହିଁ କେମା ରାଗ ନାହିଁ,
ମୁଁ କହୁଚ ତୁମ ଭଲ ପାଇଁ,
ବାଞ୍ଛାବନ୍ଧ ମୁଁ ହୃଦୟର
ଆସିଅଛି ଦୂର ପଥ ବାହି ।"

ରାଜଜେମା ବୋଲଇ,
"ହଂସ ତୁ ଧନ୍ୟ
କେଉଁ ପର ଜାଣିଲୁ
ମର୍ମର ମର୍ମ !

ନଳ ନୃପ ପାଇଁ କ
ଆଜି ମୁହିଁ ଆର୍ତ୍ତା,
ନଅ ତେବେ ମୋର ଏ
ମର୍ମର ବାର୍ତ୍ତା ।

ନଳ ରାଜା ପାଇଁକି
ଉଦ୍‌ବେଳ ବକ୍ଷେ,
ଝୁରୁଅଛି ବସି ମୁଁ
ନଭୃତ କକ୍ଷେ ।"

୪

"କାମନା ତୁମର  ସଫଳ ହେ ରାଜା
କାସନା ତୁମର ସଫଳ,
ଧାନ ଏ ହଂସ  ଦୂତର ବଚନ
ନୁହଇ ଆଜ ତ ଚପଳ ।

ଭବ ହେ ତୁମକୁ ନଳମା ଗୃହ୍ଣିତ
ମଧୁ ମଞ୍ଜୁଳ ବିକାଶେ,
କୁମୁଦମା ତାର ପୂଜା ବାଢ଼ିଅଛୁ
ବଧୂ ହେ ତୁମର ସକାଶେ ।

ତୁମର ଚରଣେ ପରାଣ ନବେଶି
ଗୃହ୍ଣିଅଛୁ ଦମୟନ୍ତୀ
ବିପୁଳ ମହୀରେ ଉଡ଼ୁ ଆଜ ତୁମ
ପ୍ରୀତିର ବୈଜୟନ୍ତୀ ।"

ବିପୁଳ ଆକୁଳ  ଉଦ୍ବେଗରେ
ନଳ ନରପତି  ଅତୁଳ ସୁଖେ,
ହଂସରେ ଯେନ ସେନହକରେ
ଜଡ଼ାଇ ଧଇଲେ ଆତୁର ବୁକେ ।
ବାରବାର ତାରେ  ଚୁମ୍ବ ଦାନ
ଭଷିଲେ ପ୍ରାଣର ସରସ ବାଣୀ,

"ହଂସ ରେ ତୁହ୍ମ ବିହଗରାଜ,
କେଡ଼େ ଅଦ୍ଭୁତ ସାଧିଲୁ ଆଜ ।
ନର ମୂର୍ତ୍ତି ଚିର ଅହଂକାର
ତୋର ପାଶେ ଆଜ ଗଲା ରେ ହାରି ।
ବିନମ୍ରେ ତତେ କି ଦେବି କହ
ହଂସରାଜ ?
ଜୀବନେ ଜୀବନ-ହଂସ ମୋର
ହେଲୁ ତୁ ଆଜ ।"






୧

ମରାଳ ଅଟେ ଶୁଭ୍ର ବିହଗବର,
ବାରେକ ଶୁଣ ଏବେ ବଚନ ମୋର ।
ଏ ଯମୁନାର ସ୍ରୋତେ
ଏଲଗେ ଦେଖି ତୋତେ,
ଭଗନ ବୁକେ ଜାଗେ ନୂତନ ଆଶା
ବଚନ-ହୀନ ଓଠେ ଫୁଟଇ ଭାଷା ।

୨

ଗଗନଗୃହ ! ଏବେ ଯାଅ ତ ଦୂରେ
ସଉଧ-କଣ୍ଠିମା ମଥୁରା ପୁରେ ।
ବରଜ-ଶଶୀ-ପାଶେ
ଯାଅ ଏ ଅବକାଶେ,
ଆମର ନିଅ ଏବେ ବାରତା ଏକ
କହୁଚ ତାହା ଟିକେ ମରମେ ଲେଖ ।

୩

କୃଷ୍ଣ ବିରହରେ ଅଚେତା ହୋଇ
କୁଞ୍ଜବନେ ରାଧା ରହିଛି ଶୋଇ ।
ବିଶାଖା ପାଶେ ବସି
ସଖୀଙ୍କ ବଁ ଚୂଅଛି,
ଲଳିତା ଆସିଛି ମୁଁ ସଳଳ ପାଇଁ,
ଭରସା ମୋର ଏବେ ତୁମକୁ ପାଇ ।

୪

ଅଳପ ଦିନ ପାଇଁ ବଚନ ଦେଇ
ଗଲେ ଯେ ଶ୍ୟାମ ଆଉ ଫେରିଲେ ନାହିଁ ।
ରାଧିକା ସୁନ୍ଦରୀ
ବଞ୍ଚେ କେଉଁପରି ?
ବାହୁଡ଼ି ନ ଆସିଲେ ବରଜଧନ
ରାଧାର ସଞ୍ଜୀବ କି ପରାଣ ମନ ?

ମଥୁରାପୁରରେ ଏବେ ରାଧାର ପ୍ରିୟ,
କରୁଣା କରି ଏବେ ବାରତା ନିଅ,
ରାଧାର ବ୍ୟଥାରାଶି
ଆକୁଳେ ପରକାଶି
ହର ମୋ ସଜନୀର ବେଦନାଚକ
ରକ୍ଷ ମୋ ସଜନୀର ଜୀବନ ରକ୍ଷ ।

୬

ତେଣେ ତ ସ୍ୱାଧିକାର ଚେତନା ନାହିଁ,
ମୁଁ ଏଥି ଆସିଅଛୁ ସଲିଳ ପାଇଁ,
ମନ ତ ଉଦ୍‌ବେଳ
କହିବ କାହିଁ ବେଳ ?
ଫେରୁଛ, ସଙ୍ଗୀ ପାଶେ ଯାଉଛ ଫେରି,
ହଂସ ଯାଅ ତୁମେ କର ନା ଡେରି ।





ଧନର କୁବେର ଗର୍ଜ୍ଜି ଉଠେ
          "ଦରଜା ଖୋଲ୍ ରେ ଦରଜା ଖୋଲ୍ ।
ଭୋକିଲା ସିଂହ ବାହାର ଆସୁ,
ରୁଦ୍ଧ ତାହାର କଣ୍ଠ-ବାୟୁ,
          ବଜ୍ର-କଠୋର ଆଦେଶ ମୋର ।

କ୍ରୀତଦାସ ଏଇ ଆନ୍ଦ୍ରେକ୍ଲସ୍
ଗୋପନରେ ଖସି ପଳାଇଥିଲା,
ଜନତା, ଦେଖ ଏ ସିଂହମୁଖେ
ଦେଖ ଆଜ ତାର ମୃତ୍ୟୁ ଲୀଳା ।

ସହସା ମୁକ୍ତ ଦୁଆର ଭେଦି
ଘେରକଲ ସିଂହ ଆସିଲା ଖେଦି,
ଝଫମଭରେ ଫୁଟାଇ ସଟା,
ଆଖିରେ ଫୁଟାଇ ଭ୍ରୂକୁଟି ଛଟା,
ଦଂଷ୍ଟ୍ରା-ମୟୂଖ ଦେଖାଇ ମୁଖେ
ଲମ୍ଫ ଦେଲା କି ଶିକାର ବୁକେ ?

ଥମିଲା ସିଂହ ତବଦ ହେଲା,
ଶିକାର ମୁଖକୁ ରହିଲା ଠାକି,
ସୁଶୀଳ ସୁବୋଧ ସେବକ ସତେ !
ଲେହିଲା ତାହାର ଚରଣ ଗତେ !
ସ୍ତବ୍ଧ ଜନତା ରହିଲା ଚାହିଁ,
ନିମେଷ-ବିହୀନ, ଚକିତ ଆଖି ।

ଜଣେ କହଇ ବାବଦୁକ କିଏ
ଥିଲା ରେ ତହିଁ
ମହାଶିକାରୀ ଏ ସିଂହ ପିଲାର
ପଛଲେ ସତେ କି ଛଦ୍ମ ଛଇ !

ମିନଟ୍, ମିନଟ୍, ବହୁତ ହେଲା,
ବଦଳିଲା ନାହିଁ ସିଂହ ପିଲାର
ସେ ଯେଉଁ ଖେଳା ।

ଧନର କୁବେର ପଚାରଇ, "ଆରେ
ଆନ୍ଦ୍ରେକ୍ଲସ,
କହ ତ ଏଲଗେ ହେଉଚ କସ ?
ବୁଝି ପାରୁଚ ମୁଁ, କମିଆ ଜାଣୁ ;
ନଜକୁ ସମାଳ ନେଇଚୁ ଜାଣି
ଏଲଗେ ତୋର ଏ ମରଣ-ବାଣ୍ଡ ।"

"ଜାଣଇଁ ନାହିଁ ମୁଁ କମିଆ କସ",
ଉତ୍ତର ଦଏ ଆନ୍ଦ୍ରେକ୍ଲସ ।

"ତୁମ ଏ ସିଂହ ବନ୍ଧୁ ମୋର
ବହୁତ ଦନର ବନ୍ଧୁ ମୋର ।,
ଏକଦା ଏହାଙ୍କ ସାଥିରେ ଥିଲ
ଥିଲ ରେ ସେନେହ ମମତା ଘୋର ।"

ଧନର କୁବେର କହଇ ପୁଣି,
"ଅଦ୍ଭୁତ କଥା ଶୁଣାଅ ତେବେ,
ସିଂହ ସାଥିରେ ସେନହ ପାଶ
ରଚିଥିଲୁ ଭଲ ତୁମ୍ଭ ରେ କେବେ ?
ଚକିତ ଜନତା ଶୁଣିବା ପାଇଁ
ଆକୁଳେ ଅନାଇ ରହିଚ ଏବେ ।"

"ଧନର କୁବେର ଧନର ବଳେ
ସଂସାରେ ତୁମେ ନିର୍ବିଘ୍ନର,
କ୍ରୀତଦାସ ହୋଇ ତୁମରି ପୁରେ
ସହି ପାରିଲିନି ଅତ୍ୟାଚାର ।

ଗୋପନରେ ବନେ ଗଭୀର ରାତେ
ତ୍ରସ୍ତ ମନେ,
ତୁମ ଘର ଛାଡ଼ି ପଳାଇ ଗଲି ମୁଁ
ଗହନ ବନେ ।

କ୍ଳାନ୍ତ ଅବଶ ବସିଲି ଏକ
ଝରଣା ପାଖେ,
ଚମକେ ପୁଣି ମୋ ଶଙ୍କା ହେଲା
ବାରବାର ତହିଁ ଶ୍ୱାପଦ-ଡାକେ ।

ଚମକି ଚମକି ଚଉପାଖେ ମୁହିଁ
ଚହିଲି ଚାହିଁ,
ମୃତ୍ୟୁର ଏକ ବହାର ଭୂଇଁ
କାହିଁ ରେ ଏଇଠି ଜୀବନ କାହିଁ ?

ସହସା ଶୁଭିଲା ଗୁରୁଗର୍ଜନ
ତାହାର ସାଥେ,
ରୁଦ୍ର ମେ ଏକ ସିଂହ ମୂରତି
ଦେଖିଲି ଅଚାନ୍ଭେ ପଲକପାତେ ।

ଶାଣିତ ତାହାର ଦୃଷ୍ଟି ଏଡ଼ି
ପାରିଲି ନାହିଁ,
ହାତ ପାଦ ମୋର ଅବଶ ହେଲା
ଯିବି ଯେ କାହିଁ ?

ଆସିଲା ସିଂହ— ପାଶରେ ବସିଲା
ଅରୁଣ ନୁହଇ
କରୁଣ ନୟନେ
ସଦୟ ବୁକେ,
ଚୁମ୍ବିଲା ମୋହର ହସ୍ତ ମୁଖେ ।

ପାଦ ଟେକି ତାର ଦେଖାଇ ଦେଲା
ମୃତ୍ୟୁର ପୁଣି ଇଏ କି ଖେଳା !

ଅନାଇଁ ଦେଖିଲି ପାଦରେ ତାର
କଣ୍ଟକ ଏକ ଯାଇଚି ଗଳି,
ନରମ ମାଂସ ଫୁଲି ଉଠିଅଛି
ବେଦନା ଭରି ।

ବକ୍ଷରେ ମୋର ସାହସ ଭରି
ସିଂହର ପାଦ ସାଦରେ ଧରି
କଣ୍ଟକ ଦେଇ କଣ୍ଟକ ତାର
ଦେଲି ମୁଁ କାଢ଼ି
ସ୍ୱସ୍ତି ପାଇ ସେ ଚୁମ୍ବିଲା ସଜଳ
ଦୃଷ୍ଟି ଢାଳି ।

ସାରା ତନୁ ମୋର ଅଙ୍କରେ ଟେକି
ଆଉଜାଇ ନେଲା ବକ୍ଷେ ତାର,
ହରଷର ଗୁରୁ ଗର୍ଜନରେ
ସ୍ନେହ ଜଣାଇଲା ବାରକୁ ବାର ।
ସାଥେ ନେଇ ମତେ ଗିରି ଗୁହାବାସେ
ଚଳିଲା ଖରେ,
ତାହାର ସାଥିରେ ରହିଲି ମୁଁ ଯାଇ
ଆନନ୍ଦରେ ।

ଶତ୍ରୁ ନଅ

ଝର ପାଣି ପିଇ, ବନ ଫଳ ମୂଳ
ଶିକାର ଖାଇ,
ଏକଇ ସାଥିରେ ଏକଇ ଗୁହାରେ
ନେଲୁ ଶାନ୍ତିର ଦିବସ ବାହି ।

ତୁମର ଶିକାରୀ-ହାବୋଡେ ଦିନେ
ସିଂହ ପଡ଼ିଲା ତୁମର ଜାଲେ,
ବନ୍ଧା ହୋଇ ସେ ଆସିଲା ଏଥି
ମୁଁ ପଡ଼ି ରହିଲି ଗହନ ଧାରେ ।

କେତେ ଦିନ ପରେ ମୁହିଁ ବି ପୁଣି
ତୁମର କବଳେ ପଡ଼ିଲି ଧରା,
ତୁମର ବହ୍ନି-ରୋଷର ଛୋଡ
ମୋହର ମୃତ୍ୟୁ-ଦହନ ଭରା ।

କମିଆ ଜାଣେ ନ ଜାଣେ ନ ବାଜ,
ସିଂହ ମୋହର ବନ୍ଧୁ ସାଥି,
ମରଣର ପଥେ ତାହାର ତୁଲେ
ପାଇଥିଲି ମୋର ପ୍ରାଣର ସ୍ୱସ୍ତି ।"

ଧନର କୁବେର କହଇ ବାଣୀ
"ପଶୁରାଜ ନୁହେଁ ସିଂହ ତୋର,
ମଣିଷ ନୁହଇ ପଶୁରାଜ ମୁଁ
ଦୁନିଆର ତଳେ ଘୃଣ୍ୟ ଘୋର ।
କ୍ଷମାକର ମତେ ଆନ୍ଦ୍ରେକ୍ଲିସ୍
ଦୁନିଆର ତଳେ ଘୃଣ୍ୟ ମୁହିଁ
ମୁକ୍ତ ତୋହର ସିଂହ ସାଥି
ମୁକ୍ତ ଏବେ ରେ ମୁକ୍ତ ତୁହି ।"

—*—



ଚନ୍ଦ୍ର ନୁହଇ ରମଣୀ ମୁଖର ମଞ୍ଜୁଳ ଉପମାନ,
ଚନ୍ଦ୍ର ନୁହଇ ସୁଧାନିଧି ଅବା ଗେଟି,
ବିଜ୍ଞାନୀ ଆମେ ପୃଥିବୀର ନାଗରିକ,
ଅନ୍ତରେ ଆଜ ବୁଝି ପାରିଅଛୁ ନୂତନ ତତ୍ତ୍ୱ ଶୋଟି ।

ପୃଥିବୀ ପରିଏ ଚନ୍ଦ୍ର ସେ ଏକ ଦେଶ,
ବକ୍ଷରେ ତାର ତୁଙ୍ଗ ପାହାଡ଼, ଘନ ବନାନୀର ରେଖା,
ନ ବୁଝି ନ ସୁଝି ଏତେ ଦିନ ଯାଏ ଆମେ
କହୁଥିଲୁ ତାହା ଶଶୀର ଚିହ୍ନଲେଖା ।

ଶଂଦେ ଏଗାରୁ

ଦୂର ସରଣୀର ଦୁର୍ଗମ ତମସାରେ
ଯୁଗର ଯାତ୍ରୀ ବିଜୟୀ ଆମେ ଏ ପୃଥିବୀର ସନ୍ତାନ,
ଚନ୍ଦ୍ର ଗ୍ରହକେ ପଠାଇଛୁଁ ସ୍ପୁଟ୍‌ନିକ୍
ଚନ୍ଦ୍ର ଗ୍ରହକେ କରିଅଛୁ ଅଭିଯାନ ।

ଲାଇକା ରେ ତୁହି ପୃଥିବୀର ସାରମେୟ,
ଚନ୍ଦ୍ରମୁଲକେ ପ୍ରଥମେ ତତେ ରେ ପଠାଇ ଦେଇଛୁ ତତେ,
ପ୍ରଥମ ଯାତ୍ରୀ, ପ୍ରଥମ ଶହୀଦ ତୁହି
ବାଞ୍ଛିତ ଆମ ଦିଗ୍‌ବିଜୟର ପଥେ ।

ଦୃପ୍ତ ପତାକା ଉଠାଇ ଊର୍ଦ୍ଧ୍ୱ ନଭେ
ଦିଗ୍‌ବିଜୟର ଉଲ୍ଲାସେ ଆଜି ମତ୍ତ ଧରଣୀବାସୀ,
ମାତ୍ର ଲାଇକା କରୁଣ ତୋ ଚିତ୍କାର
ଗମ୍ଭୀରତର ମୋ ମର୍ମେ ବାଜୁଚି ଆସି ।



# ଟିପ୍ପଣୀ

## ସାରମେୟ

ଗଳ୍ପଟି ବାଲ୍ମୀକି-ରାମାୟଣରେ ଅନୁସଂଧେୟ ।

## କପୋତ ଦଂପତି

ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧର ଗଳ୍ପଟି ଖୁବ୍ ଚିତ୍ତାକର୍ଷକ । ଅବଧୂତଙ୍କ ଚବିଶ ଗୁରୁ ମଧ୍ୟରେ ଏ ଗଳ୍ପର ଦୃଷ୍ଟାନ୍ତ । ମାୟା ମମତାର ପରିଣାମ କପର ଭୟାବହ ତାହାହିଁ ତହିଁରେ ଅଛି । ମାତ୍ର ଅନ୍ୟ ପକ୍ଷରେ ତାର କରୁଣ ଚିତ୍ର ପାଠକ ପ୍ରାଣରେ ଗଭୀର ସମବେଦନା ସୃଷ୍ଟି କରେ ।

## ଚନ୍ଦ୍ରଦେହେ ଶଶାର ଛବି

କବିତାର କଥାବସ୍ତୁ Donald A. Makingie ଙ୍କର Burmese Wonder Tales ରେ ଅଛି, ମାତ୍ର ତାହା ବୌଦ୍ଧ ଜାତକର ଶଶଜାତକ ଗଳ୍ପ । ଗଳ୍ପର ବ୍ରାହ୍ମଣ ସ୍ଥାନରେ ମୁଁ ପାନ୍ଥ ରଖିଅଛି ।

## ଗୋଲାପ ଓ ବୁଲ୍‌ବୁଲ୍

Oscare Wilde ଙ୍କ Rose and Nightangle ଗଳ୍ପରୁ କଥାଟି ଗୃହୀତ ।

## ମରୁର ଇଗଲ

ଗୋଟିଏ ସୂଚନା ଗଳ୍ପର ଭିତ୍ତି ଉପରେ କବିତାଟି ଲିଖିତ ।

## ଚିତ୍ରଗ୍ରୀବ

ଗଳ୍ପଟି ପଞ୍ଚତନ୍ତ୍ର ଓ ହିତୋପଦେଶର ସୁପ୍ରସିଦ୍ଧ କଥା ।

ଶଦେ ତେର

। 

## ଶକ୍ତିଧର

ଏହାର କଥାବସ୍ତୁ ବୌଦ୍ଧ ଜାତକରୁ ଗୃହୀତ ।

## ବୋ

ଇଂରେଜ କବି W. Cowper ଙ୍କ The Dog and the Waterlily କୁ ଭିତ୍ତିକରି ଏ କବିତା ଲେଖା ଯାଇଛି । ତାଙ୍କର ପ୍ରିୟଶ୍ୱାନ Beau (ବୋ) ଆଜି କବିଙ୍କ ଲେଖମାରେ ଅମର ।

## ଶୁଆ ଓ ଦେବଦୂତ

ମହାଭାରତର ଅନୁଶାସନ ପର୍ବରେ ଶରଶଯ୍ୟାଶାୟୀ ଭୀଷ୍ମ ଯୁଧିଷ୍ଠିରଙ୍କୁ ଇନ୍ଦ୍ର ଶୁକ ସଂବାଦ କହିଛନ୍ତି ଓ ବୌଦ୍ଧ ଜାତକରେ ମହାଶୁକ ଜାତକରେ ଦ୍ରଷ୍ଟବ୍ୟ । ତହିଁରୁ ଏହାର କଥାବସ୍ତୁ ଗୃହୀତ ହୋଇଛି, ମାତ୍ର ଇନ୍ଦ୍ର ସ୍ଥାନରେ ଦେବଦୂତ ଓ ବ୍ରାହ୍ମଣ ସ୍ଥାନରେ ପାନ୍ଥ ରଖା ଯାଇଛି ।

## ବଳାକା

ପ୍ରାୟ ଖ୍ରୀ: ପୂ: ୫୫୦ ରେ ଗ୍ରୀସ୍ କବି ଆଇବିକସ୍‌ଙ୍କ ଜୀବନର ଏହା କରୁଣତମ ଘଟନା । ଏଡ଼ିଥ୍ ହାମିଲ୍‌ଟନ୍ (Edith Hamilton) ଙ୍କ Mythology ର ୨୯୩ ପୃଷ୍ଠାରୁ ଗଳ୍ପଟି ଗୃହୀତ ।

## ଚୈତକ

ଚୈତକ ପ୍ରାତଃ ସ୍ମରଣୀୟ ଜାଲୋପୁରର ପ୍ରତାପ ସିଂଙ୍କର ରଣଅଶ୍ୱ । ଐତିହାସିକ Todd ଙ୍କ Rajasthan ରେ ଚୈତକର କୃତିତ୍ୱ ଓ ତ୍ୟାଗ ଉତ୍ତମରୂପେ ବର୍ଣ୍ଣିତ ।

## ପଶୁରାଜ

ଆଣ୍ଡ୍ରେକ୍ଲସ ଓ ସିଂହ କଥାରୁ ଏହାର ଉପାଦାନ ଗୃହୀତ ।

---

ଶତେକ ଘଣ୍ଟା